# ଯେଭଳି ଚିନ୍ତା
# ସେଭଳି ବ୍ୟକ୍ତିତ୍ୱ

(James Allen ଙ୍କ "As a Man Thinketh" ର ଓଡ଼ିଆ ଅନୁବାଦ)



ଅନୁବାଦ : ବସନ୍ତ କୁମାର ପାଳ

# ଯେଭଳି ଚିନ୍ତା ସେଭଳି ବ୍ୟକ୍ତିତ୍ୱ

(James Allen ଙ୍କ "As a Man Thinketh" ର ଓଡ଼ିଆ ଅନୁବାଦ)



ଅନବାଦ : ବସନ୍ତ କମାର ପାଳ

# ଯେଉଳି ଚିନ୍ତା
# ସେଉଳି ବ୍ୟକ୍ତିତ୍ୱ

## (James Allen ଙ୍କ "As a Man Thinketh" ର୍ ଓଡ଼ିଆ ଅନୁବାଦ)


ଅନୁବାଦ © ବସନ୍ତ କୁମାର୍ ପାଳ

ଟାଇପ-୩/୨୭୩, ନୂଆ ଏ.ଜି. କଲୋନି, ଭୁବନେଶ୍ୱର - ୧୨



ପ୍ରଚ୍ଛଦ : ରାକେଶ ଚନ୍ଦ୍ର ଜେନା (ଟୁଲୁ)

ଶ୍ରୀଗୁଣ୍ଡିଚା ୨୦୦୯

# ପ୍ରାକ୍ ସୂଚନା

"ଯେଭଳି ଚିନ୍ତା ସେଭଳି ବ୍ୟକ୍ତିତ୍ୱ" - ଏହି କ୍ଷୁଦ୍ର ପ୍ରବନ୍ଧଟି ଆଜି ଅନେକ ଜୀବନକୁ ବଳିଷ୍ଠ ଭାବେ ପ୍ରଭାବିତ କରୁଛି ।

ଏହାକୁ ଧୀରସ୍ଥିର ଭାବେ, ଚିନ୍ତା କରିବା ସହ ପଢ଼ନ୍ତୁ ଓ ବାରମ୍ବାର ପଢ଼ନ୍ତୁ ।

ଦୃଢ଼ ନିଷ୍ଠାପର ବ୍ୟକ୍ତିତ୍ୱ, ଆତ୍ମ ନିୟନ୍ତ୍ରଣ ଓ ଫଳପ୍ରଦ ଚିନ୍ତନ ବିଷୟରେ ଅନେକ ଉପାଦେୟ ଉପାଦାନରେ ଏହା ସମୃଦ୍ଧ ।

ଏହି କ୍ଷୁଦ୍ର ପ୍ରବନ୍ଧଟିର ବାର୍ତ୍ତା ଅନେକଙ୍କ ଜୀବନରେ ଅସାଧାରଣ ଶକ୍ତିର ଉତ୍ସକୁ ଉନ୍ମୁକ୍ତ କରିଦେଇଥିବା ସୁବିଦିତ ।

ଏଭଳି ଏକ ମୂଲ୍ୟବାନ କୃତିର ଅନୁବାଦ କରି ଓଡ଼ିଆ ପାଠକଙ୍କ ନିକଟରେ ପହଞ୍ଚାଇବାର ଇଚ୍ଛା ଅନେକ ଦିନରୁ ମନରେ ବସା ବାନ୍ଧିଥିଲା । ଅନୁବାଦ ଜନିତ ତ୍ରୁଟିକୁ ମାର୍ଜନା କରି ପାଠକ ଯଦି ଲେଖକଙ୍କ ଚିନ୍ତାଧାରା ସହ ଏକାତ୍ମ ହୋଇଯିବେ ତେବେ ଶ୍ରମ ସାର୍ଥକ ମଣିବି । James Allenଙ୍କ ମୂଳ ପ୍ରବନ୍ଧ "As a man thinketh" ଇଣ୍ଟରନେଟ୍‌ରେ ସହଜରେ ଉପଲବ୍ଧ ।

- ବସନ୍ତ କୁମାର ପାଳ

---

ଯଦ୍ୟଦରମଣୀୟାନାଂ ସ୍ୱସ୍ଥେ ମନସି ରମ୍ୟତା ।
ଅତାଽସ୍ତୁ ସୁଖିନାଂ ଚାସ୍ତୁ ଚାସ୍ତୁ ଦୁଃଖାୟ ଦୁଃଖିନାମ୍ ॥

ମନ ଶାନ୍ତ ରହିଲେ ସବୁ କିଛି ଭଲ ଲାଗେ । ସନ୍ତୁଷ୍ଟ ବ୍ୟକ୍ତିକୁ ଅରୁଚିକର ମଧ୍ୟ ରୁଚିକର ଓ ଦୁଃଖୀକୁ ମନୋହର ବସ୍ତୁ ମଧ୍ୟ ବିରକ୍ତିକର ବୋଧ ହୁଏ ।

---

# ଚିନ୍ତା ଓ ଚରିତ୍ର

"ମଣିଷ ତା ହୃଦୟ କନ୍ଦରରେ ଯେମିତି ଚିନ୍ତାକରେ ତାହାର ବ୍ୟକ୍ତିତ୍ୱ ସେହିଭଳି" - ଏ ଯେଉଁ ପ୍ରଚଳିତ ପ୍ରବାଦ ଅଛି ତାହା ମଣିଷର ସମଗ୍ର ସତ୍ତା କ୍ଷେତ୍ରରେ କେବଳ ପ୍ରଯୁଜ୍ୟ ନୁହେଁ; ଏହାର ଅର୍ଥ ଏତେ ବ୍ୟାପକ ଯେ ମଣିଷର ପ୍ରତ୍ୟେକ ଅବସ୍ଥା ଓ ତା' ଜୀବନର ପ୍ରତ୍ୟେକ ପରିସ୍ଥିତି ସହ ଏହା ସମ୍ପୃକ୍ତ । ଆକ୍ଷରିକ ଅର୍ଥରେ କହିବାକୁ ଗଲେ ମଣିଷ ଯେମିତି ଚିନ୍ତା କରେ ତା ବ୍ୟକ୍ତିତ୍ୱ ସେହିପରି ହୋଇଥାଏ । ମଣିଷର ସମସ୍ତ ଭାବନାର ସାମଗ୍ରିକ ଫଳ ହେଉଛି ତା ଚରିତ୍ର ।

ମଞ୍ଜିରୁ ଗଛ ହୁଏ । ମଞ୍ଜିବିନା ଗଛ ସୃଷ୍ଟିହେବା ଯେପରି ଅସମ୍ଭବ ସେହିପରି ମଣିଷର ପ୍ରତ୍ୟେକ କର୍ମ ତାହାର ଗୋପନୀୟ ଚିନ୍ତା ରୂପକ ମଞ୍ଜିରୁ ଉଦ୍ଭବ । ଭାବନା ନଥିଲେ କର୍ମ ନଥାନ୍ତା । ସତଃସ୍ଫୁର୍ତ୍ତ କାର୍ଯ୍ୟ, ପୂର୍ବକଳ୍ପିତ କାର୍ଯ୍ୟ ଅଥବା ସୁଚିନ୍ତିତ କାର୍ଯ୍ୟ - ଏ ସମସ୍ତ କ୍ଷେତ୍ରରେ ଏହି ଉକ୍ତି ସମାନ ଭାବରେ ପ୍ରଯୁଜ୍ୟ ।

କଳ୍ପନା କାର୍ଯ୍ୟ ରୂପରେ ପ୍ରସ୍ଫୁଟିତ ହୁଏ । ଏହି ପୁଷ୍ପରୁ ଆନନ୍ଦ ତଥା ଯନ୍ତ୍ରଣା ରୂପକ ଫଳ ମିଳେ । ଏହିଭଳି ଭାବେ ମଣିଷ ତା ନିଜ ଉଦ୍ୟାନରେ ମିଠା, ପିତା - ଉଭୟ ପ୍ରକାରର ଫଳ ଉତ୍ପନ୍ନ କରେ ।

"ଆମେ ଯାହା, ଆମେ ଯେମିତି,
ସେ ସବୁକୁ ରୂପ ଦେଇଛି ଆମ ମନର କଳ୍ପନା ।
ଏଇ କଳ୍ପନା ଗୁଡ଼ିକ ଘସି, ମାଜି, ଛେଚି, ପିଟି, ଗଢ଼ନ୍ତି ଆମକୁ ।
ମଣିଷ ମନର କୁଚିନ୍ତା ଫଳରେ ସେ ପାଏ ଯନ୍ତ୍ରଣା,
ଯେମିତି ବଳଦ ପଛେ ପଛେ ଚାଲୁଥାଏ ଚକ ଶଗଡ଼ଗାଡ଼ିର ।
ଚିନ୍ତା ଯଦି ଶୁଦ୍ଧପୂତ, ଆନନ୍ଦ ପିଛା କରେ ତା'ର
ଯେମିତି ତା ନିଜ ଛାଇ, ଧ୍ରୁବ ସତ୍ୟ, ସୁନିଶ୍ଚିତ ଏହା ।"

ନିୟମ ଅନୁଯାୟୀ ମଣିଷର ଅଭିବୃଦ୍ଧି ହୋଇଥାଏ । ମଣିଷର ସର୍ଜନା ଧୂର୍ତ୍ତତା ଜନୀତ ନୁହେଁ । ଦୃଶ୍ୟମାନ ପାର୍ଥିବ ଜଗତରେ ଯେମିତି, ମଣିଷ ମନର ପ୍ରଚ୍ଛନ୍ନ ଚିନ୍ତାରେ ମଧ୍ୟ ସେମିତି କାର୍ଯ୍ୟ-କାରଣ ତତ୍ତ୍ୱର ପ୍ରଭାବ ସମ୍ପୂର୍ଣ୍ଣ ଏବଂ ଏଥିରେ କୌଣସି ବିଚ୍ୟୁତି ନାହିଁ । ମହନୀୟ ଦେବୋପମ ଚରିତ୍ର ବୋଲି ଆମେ ଯାହା କହୁ ତାହା କୌଣସି କରୁଣା ଅଥବା ଭାଗ୍ୟର ଫଳ ନୁହେଁ । ଏହା ହେଉଛି ସତ୍‌ଚିନ୍ତା ଓ ନିରବଚ୍ଛିନ୍ନ ଉଦ୍ୟମର ସ୍ୱାଭାବିକ

ଫଳାଫଳ, ଇପ୍‌ସିତ ଦେବୋପମ ଚିନ୍ତାଧାରା ସହ ନିରନ୍ତର ସମ୍ପର୍କରେ ଆସିବାର ଫଳ । ଠିକ୍ ସେଇ ପଦ୍ଧତିରେ ନୀଚ, ପାଶବିକ ଚରିତ୍ର ହେଉଛି ହୀନ ଚିନ୍ତାଧାରା ସହ ନିରନ୍ତର ସହାବସ୍ଥାନର ଫଳ ।

ନିଜକୁ ଗଢ଼ିବାରେ ବା ଭାଙ୍ଗିବାରେ ମଣିଷ ନିଜେ ହିଁ ଦାୟୀ । ଚିନ୍ତାରାଜ୍ୟର ଅସ୍ତ୍ରାଗାରରେ ସେ ଯେଉଁ ସବୁ ଅସ୍ତ୍ର ଶସ୍ତ୍ର ନିର୍ମାଣ କରେ ତଦ୍ଦ୍ୱାରା ସେ ନିଜେ ବିନାଶ ପ୍ରାପ୍ତ ହୁଏ; ସେ ମଧ୍ୟ ନିଜେ ନିର୍ମାଣ କରିଥିବା ଯନ୍ତ୍ରପାତି ସହାୟତାରେ ତା ନିଜ ପାଇଁ ଆନନ୍ଦ, ସାମର୍ଥ୍ୟ ଓ ଶାନ୍ତିର ସ୍ୱର୍ଗୀୟ ସୌଧ ନିର୍ମାଣ କରେ । ସୁନିର୍ବାଚିତ ସତ୍‌ଚିନ୍ତାକୁ ଉଚିତ୍ ପ୍ରୟୋଗ କରି ମଣିଷ ଶୁଦ୍ଧ ଦିବ୍ୟତ୍ୱ ଆଡ଼କୁ ଅଗ୍ରସର ହୁଏ; ଚିନ୍ତାର ଅନୁଚିତ୍ ପ୍ରୟୋଗ ଏବଂ ଅସତ୍‌ଚିନ୍ତା ଫଳରେ ସେ ବିପଥଗାମୀ ହୁଏ, ପଶୁତ୍ୱଠାରୁ ଅଧିକ ନୀଚସ୍ତରକୁ ଖସିଯାଏ । ଏଇ ଦୁଇଟି ଚରମ ଅବସ୍ଥା ମଧ୍ୟରେ ଚରିତ୍ରର ଅନ୍ୟାନ୍ୟ ସମସ୍ତ ସ୍ତର ଅନ୍ତର୍ଭୁକ୍ତ ଏବଂ ମଣିଷ ହେଉଛି ସମସ୍ତ ପ୍ରକାର ଚରିତ୍ରର ସ୍ରଷ୍ଟା ଏବଂ ପ୍ରଭୁ ।

ଏହି ଯୁଗରେ ଆତ୍ମା ସମ୍ବନ୍ଧୀୟ ଯେତେ ସବୁ ସୁନ୍ଦର ସତ୍ୟର ପୁନରୁଦ୍ଧାର କରାଯାଇ ପରିପ୍ରକାଶ ଘଟିଛି ସେଗୁଡ଼ିକ ମଧ୍ୟରୁ ଯେଉଁ ଗୋଟିକ ସବୁଠୁ ଅଧିକ ଆନନ୍ଦପ୍ରଦ, ଅଥବା ସ୍ୱର୍ଗୀୟ ପ୍ରତିଶ୍ରୁତି ଓ ବିଶ୍ୱାସରେ ଫଳବତୀ; ତାହା ହେଉଛି ମଣିଷ ତା' କଳ୍ପନାର ପ୍ରଭୁ, ତା ଚରିତ୍ରର କର୍ମକାର ଏବଂ ତା' ପରିବେଶ, ପରିସ୍ଥିତି ତଥା ଭାଗ୍ୟର ସ୍ରଷ୍ଟା, ରୂପକାର ଓ ନିୟନ୍ତା ।

କ୍ଷମତା, ବୁଦ୍ଧିମତା, ପ୍ରେମ ପ୍ରଭୃତି ଶକ୍ତିର ଅଧିକାରୀ ମଣିଷ ହେଉଛି ତା' ନିଜ ଚିନ୍ତାର ପ୍ରଭୁ । ପ୍ରତ୍ୟେକ ପରିସ୍ଥିତିର ଚାବିକାଠି ତା' ନିଜ ହାତରେ । ରୂପାନ୍ତର କରି ପାରିବାର ଓ ପୁନର୍ଜୀବିତ କରିବାର ଯେଉଁ ଶକ୍ତି ତା' ନିଜ ଭିତରେ ବିଦ୍ୟମାନ ତାହାକୁ ବ୍ୟବହାର କରି ସେ ଯେମିତି ଇଚ୍ଛା କରିବ ସେମିତି ଭାବେ ନିଜକୁ ଗଢ଼ିପାରିବ ।

ମଣିଷ ସବୁବେଳେ ତା ନିଜର ପ୍ରଭୁ । ଏପରିକି ତାର ଦୁର୍ବଳତମ ଓ ନିଚତମ ଅବସ୍ଥାରେ ମଧ୍ୟ । କିନ୍ତୁ ଏହିଭଳି ଦୁର୍ବଳ ଅବସ୍ଥାରେ ମଧ୍ୟ ସେ ତା ନିଜର ପ୍ରଭୁ । କିନ୍ତୁ ଗୋଟାଏ ନିର୍ବୋଧ ପ୍ରଭୁ ଯିଏ ତା ପରିବାରକୁ ଖରାପଭାବେ ପରିଚାଳିତ କରେ । ଯେତେବେଳେ ମଣିଷ ତା ନିଜର ଅବସ୍ଥା ପ୍ରତି ଧ୍ୟାନ ଦିଏ ଏବଂ ତା ନିଜ ବିଦ୍ୟମାନ ସତ୍ତାର ନିୟମକୁ ଗଭୀର ଯତ୍ନ ସହକାରେ ନିରୀକ୍ଷଣ କରେ, ସେତେବେଳେ ସେ ବିଜ୍ଞ ପ୍ରଭୁ ପାଲଟିଯାଏ, ସୁଫଳପ୍ରଦ ଚିନ୍ତା କରେ, ସେ ଚିନ୍ତା ଫଳବତୀ ହେବା ଦିଗରେ ତା ସାମର୍ଥ୍ୟକୁ ବିଜ୍ଞତାର ସହ ନିୟୋଜିତ କରେ । ସଚେତନ ପ୍ରଭୁ ଏହିଭଳି । ନିଜ ହୃଦୟକନ୍ଦରର କଳ୍ପନା ମାନଙ୍କର ନିୟମକୁ ଆବିଷ୍କାର କରିପାରିଲେ ମଣିଷ ହିଁ ଏହି

ପ୍ରକାର ପ୍ରଭୁ ହୋଇପାରିବ । ସେ ଆବିଷ୍କାର ସମ୍ପୂର୍ଣ୍ଣ ଭାବେ ପ୍ରୟୋଗ, ଆତ୍ମ ବିଶ୍ଳେଷଣ ଓ ଅଭିଜ୍ଞତାର ବିଷୟ ।

ଏହିଭଳି ଅନୁସନ୍ଧାନ ଓ ଖନନ ଫଳରେ ସୁନା ଓ ହୀରା ମିଳିଥାଏ । ମଣିଷ ତା ଆତ୍ମାର ଗଭୀରତମ ପ୍ରଦେଶକୁ ଖୋଳିଲେ ତା ନିଜ ସତ୍ତା ସମ୍ବନ୍ଧୀୟ ସମସ୍ତ ସତ୍ୟର ସନ୍ଧାନ ପାଇପାରିବ ଏବଂ ଜାଣିପାରିବ ଯେ ସେ ନିଜେ ହିଁ ତା ଚରିତ୍ରର ପ୍ରଭୁ, ତା ଜୀବନର ରୂପକାର ଏବଂ ତା ଭାଗ୍ୟର ନିୟନ୍ତା । ସେ ଯଦି ତା ଚିନ୍ତା ପ୍ରବାହକୁ ନିରୀକ୍ଷଣ କରି ନିଜ ଉପରେ ଓ ଅନ୍ୟମାନଙ୍କ ଉପରେ ସେ ସବୁର ପ୍ରଭାବକୁ ଠାବ କରିପାରିବ, ନିଜ ଜୀବନ ଓ ପରିସ୍ଥିତି ସହ ସେ ସବୁ ଚିନ୍ତାର ପ୍ରଭାବକୁ ହୃଦୟଙ୍ଗମ କରିପାରିବ,ଧୈର୍ଯ୍ୟ ଓ ନିଷ୍ଠାର ସହ ଅନୁସନ୍ଧାନ ଓ ଅଭ୍ୟାସ କରି କାରଣ ଓ ଫଳାଫଳର ସାମଞ୍ଜସ୍ୟ ଜାଣିପାରିବ, ତା'ର ପ୍ରତ୍ୟେକ ଅଭିଜ୍ଞତାକୁ (ଦୈନନ୍ଦିନର ଘଟଣାବଳୀ ସହ ସମସ୍ତ ଛୋଟ ଛୋଟ ଅନୁଭୂତି ସମେତ) ବ୍ୟବହାର କରି ନିଜ ବିଷୟରେ ଜ୍ଞାନ ହାସଲ ପାଇଁ ପ୍ରୟାସ କରିବ; ଚିନ୍ତାଧାରାକୁ ନିୟନ୍ତ୍ରଣ କରି ପରିବର୍ତ୍ତନ କରିପାରିବ ତେବେ ସେ ନିର୍ଭୁଲ ଭାବରେ ତା ନିଜର କ୍ଷମତା, ଜ୍ଞାନ ଓ ଅନ୍ତର୍ଦୃଷ୍ଟି ସମ୍ବନ୍ଧରେ ଅବଗତ ହୋଇପାରିବ ।

କେବଳ ଏହି ଦିଗରେ ନିୟମଟି ସମ୍ପୂର୍ଣ୍ଣ ଯଥା : "ଯିଏ ଖୋଜିବ ସେ ପାଇବ, ଯିଏ ଦ୍ୱାରରେ କରାଘାତ କରିବ ତା ପାଇଁ ଦ୍ୱାର ଖୋଲିଯିବ ।", ଅନ୍ୟ କୌଣସି ଦିଗରେ ନୁହେଁ, କେବଳ ଧୈର୍ଯ୍ୟ, ଅଧ୍ୟବସାୟ ଏବଂ ଅବିରତ ପ୍ରାର୍ଥନା ଫଳରେ ମଣିଷ ଜ୍ଞାନମନ୍ଦିରର ଦ୍ୱାରଟପି ଭିତରକୁ ପ୍ରବେଶ କରିପାରିବ ।

ମଣିଷ ମନକୁ ବଗିଚା ସହ ତୁଳନା କରାଯାଇ ପାରେ । ସେ ବଗିଚା ହୁଏତ ସଯତ୍ନ ପ୍ରସ୍ତୁତ ବଗିଚା ଅଥବା ଅରମା, ଉଜୁଡ଼ା ବଗିଚା ହୋଇପାରେ । ଯେଉଁ ପ୍ରକାର ହେଲେ ମଧ ଏହା ନିଶ୍ଚିତ ଭାବେ ଫଳ ପ୍ରଦାନ କରିବ । ଯଦି ଦରକାରୀ ମଞ୍ଜି ଏଥିରେ ବୁଣା ନଯିବ ତେବେ ଗୁଡ଼ାଏ ଅନାବନା ବାଳୁଙ୍ଗାମଞ୍ଜି ସେଠି ପଡ଼ି ବଂଶବୃଦ୍ଧି କରିବେ ଓ ସମଜାତୀୟ ମଞ୍ଜି ଉତ୍ପନ୍ନ କରିବେ ।

ମାଳିଟି ଯେପରି ବଗିଚାର ଜମିକୁ ଭଲଭାବରେ କର୍ଷଣ କରି ସେଥିରୁ ଅନାବନା ଘାସ, ବାଳୁଙ୍ଗା ବାଛି ସଫା କରିଦିଏ ଏବଂ ସେଥିରେ ସେ ଚାହୁଁଥିବା ଫୁଲଫଳ ଉତ୍ପାଦନ କରେ ସେହିପରି ମଣିଷ ତା ମନ ରୂପକ ବଗିଚାକୁ ଯତ୍ନ ସହକାରେ ପ୍ରସ୍ତୁତ କରିବା ଉଚିତ୍ । ସେଥିରୁ ସମସ୍ତ ଅସତ୍, ଅନାବଶ୍ୟକ ଓ କଳୁଷିତ ଚିନ୍ତାକୁ ସଫା କରିଦେବା ଉଚିତ୍ । ସତ୍, ଆବଶ୍ୟକ ତଥା ଶୁଦ୍ଧ ଚିନ୍ତାରୂପକ ଫୁଲଫଳରେ ଯେପରି ତା ମନ ବଗିଚା ଭରି ଉଠିବ ସେ ଦିଗରେ ସଯତ୍ନ ପ୍ରୟାସ କରିବା ଉଚିତ୍ । ଏହି ଉପାୟ ଅବଲମ୍ବନ

କଲେ, ଶୀଘ୍ର ହେଉ ବା ବିଳମ୍ବରେ ହେଉ, ମଣିଷ ଯେ ତା ନିଜ ଆତ୍ମାର ସର୍ବଶ୍ରେଷ୍ଠ ମାଳୀ, ତା ନିଜ ଜୀବନର ନିର୍ଦ୍ଦେଶକ, ଏକଥା ଆବିଷ୍କାର କରିପାରିବ । ଚିନ୍ତନ ପ୍ରକ୍ରିୟାର ନିୟମ ଗୁଡ଼ିକ ତା ଅନ୍ତରାତ୍ମାରେ ପ୍ରସ୍ଫୁଟିତ ହେବାକୁ ଲାଗିବେ । ତା ଚରିତ୍ରକୁ, ତା ପରିସ୍ଥିତିକୁ ଏବଂ ତା'ର ଭାଗ୍ୟକୁ ରୂପ ଦେବାରେ ଚିନ୍ତାଶକ୍ତି ଓ ମାନସିକ ଉପାଦାନ ମାନଙ୍କର ଭୂମିକାକୁ ସେ ଅଧିକ ସ୍ପଷ୍ଟ ଭାବେ ବୁଝିପାରିବ ।

ଚିନ୍ତା ଏବଂ ଚରିତ୍ର ଏକାକଥା. । କେବଳ ପରିବେଶ ଓ ପରିସ୍ଥିତିରେ ଚରିତ୍ର ଋଦ୍ଧିମନ୍ତ ହୁଏ ଏବଂ ରୂପ ନିଏ । ମଣିଷ ଜୀବନର ବାହ୍ୟ ଅବସ୍ଥା ସବୁବେଳେ ତା ଆଭ୍ୟନ୍ତରୀଣ ଅବସ୍ଥା ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଏହାର ଅର୍ଥ ନୁହେଁ ଯେ କୌଣସି ଏକ ନିର୍ଦ୍ଦିଷ୍ଟ ସମୟରେ ମଣିଷର ପରିସ୍ଥିତି ଗୁଡ଼ିକ ତା ସମଗ୍ର ଚରିତ୍ରକୁ ଦର୍ଶାଉଥିବ । କିନ୍ତୁ ସେହି ପରିସ୍ଥିତି ଗୁଡ଼ିକ ନିଜ ଭିତରର ଚିନ୍ତନ ପ୍ରକ୍ରିୟାର କେତେକ ଅପରିହାର୍ଯ୍ୟ ଉପାଦାନ ସହ ଏତେ ଅନ୍ତରଙ୍ଗ ଭାବେ ଜଡ଼ିତ ଯେ ସେହି ସମୟ ପାଇଁ ତା ନିଜର ବିକାଶ ନିମନ୍ତେ ସେ ସବୁ ଅତ୍ୟନ୍ତ ଆବଶ୍ୟକ ।

ପ୍ରତ୍ୟେକ ମଣିଷର ବର୍ତ୍ତମାନର ଅବସ୍ଥିତି ତା ସତ୍ତାର ବିଦ୍ୟମାନତା ନିୟମ ଉପରେ ଆଧାରିତ । ନିଜର ଯେଉଁ ଚିନ୍ତାଦ୍ୱାରା ତା ଚରିତ୍ର ରୂପ ନେଇଛି ସେଇ ସମସ୍ତ ଚିନ୍ତା ତାର ବର୍ତ୍ତମାନର ସ୍ଥିତି ପାଇଁ ଦାୟୀ । ତା ଜୀବନର ଶୃଙ୍ଖଳା କ୍ରମରେ କୌଣସି କଥା ଅକସ୍ମାତ୍ ଅଥବା ଭାଗ୍ୟବଶତଃ ଘଟିନାହିଁ । ସମସ୍ତ ଘଟଣା ପଛରେ ଏପରି ଏକ ନିୟମ କାମ କରୁଛି ଯହିଁରେ କେବେ ତ୍ରୁଟି ପରିଲକ୍ଷିତ ହୁଏନାହିଁ । ଯେଉଁମାନେ ନିଜ ପାରିପାର୍ଶ୍ୱିକ ପରିସ୍ଥିତି ସହ ଅଡୁଆ ଅନୁଭବ କରନ୍ତି ସେମାନଙ୍କ ପାଇଁ ଏ ନିୟମ ଯେପରି କାର୍ଯ୍ୟକରେ ନିଜ ପାରିପାର୍ଶ୍ୱିକ ପରିବେଶକୁ ନେଇ ସନ୍ତୋଷ ଅନୁଭବ କରୁଥିବା ବ୍ୟକ୍ତିଙ୍କ ପାଇଁ ମଧ ସେହିପରି କାର୍ଯ୍ୟକରେ ।

ଏକ ବିକାଶୋନ୍ମୁଖୀ ତଥା ବିବର୍ତ୍ତନଶୀଳ ପ୍ରାଣୀ ହିସାବରେ ମଣିଷ ତାର ବର୍ତ୍ତମାନର ସ୍ଥିତିରେ ବିଚାର କଲେ ହୃଦୟଙ୍ଗମ କରିପାରିବ ଯେ ସେ ଆହୁରି ବିକଶିତ ହେବ । କୌଣସି ପରିସ୍ଥିତି ମଣିଷକୁ ଆଣିଦେଇଥିବା ଏହି ଆଧାତ୍ମିକ ଚେତନା ସମ୍ବନ୍ଧରେ ଅବଗତ ହେବା ବେଳକୁ ସେ ପରିସ୍ଥିତି ଅପସରି ଯାଇ ଅନ୍ୟ ଏକ ପରିସ୍ଥିତିର ଆବିର୍ଭାବ ଘଟି ସାରିଥାଏ ।

ଯେ ପର୍ଯ୍ୟନ୍ତ ମଣିଷ ଭାବୁଥିବ ଯେ ସେ ହେଉଛି ବାହ୍ୟ ପରିସ୍ଥିତି ମାନଙ୍କ ଦ୍ୱାରା ସୃଷ୍ଟ ସେ ପର୍ଯ୍ୟନ୍ତ ପରିସ୍ଥିତିମାନଙ୍କ ଦ୍ୱାରା ସେ ଆଘାତପ୍ରାପ୍ତ ହେଉଥିବ । କିନ୍ତୁ ଯେତେବେଳେ ସେ ହୃଦୟଙ୍ଗମ କରିବ ଯେ ସେ ହେଉଛି ଏକ ସୃଜନଶୀଳ ଶକ୍ତି, ସେ ତା

ଅନ୍ତରାତ୍ମାରେ ଲୁକ୍‌କାୟିତ ବୀଜ ଓ ଭୂମିକୁ ନିଜ ଇଙ୍ଗିତରେ ପରିଚାଳିତ କରିପାରିବ ଯେଉଁଥିରୁ ପରିସ୍ଥିତି ଜନ୍ମନିଏ; ସେତେବେଳେ ସେ ତା ନିଜର ଯଥାର୍ଥ ପ୍ରଭୁ ପଦବାଚ୍ୟ ହୋଇପାରିବ ।

ଆତ୍ମ ନିୟନ୍ତ୍ରଣ ଓ ଆତ୍ମଶୁଦ୍ଧି ଅଭ୍ୟାସ କରିଥିବା ପ୍ରତ୍ୟେକ ମଣିଷ (ଯେତେ ସମୟ ପାଇଁ ହେଉନା କାହିଁକି) ଜାଣେ ଯେ ଚିନ୍ତାରୁ ପରିସ୍ଥିତିମାନ ଜନ୍ମ ନିଅନ୍ତି । କାରଣ ସେ ନିଶ୍ଚୟ ଲକ୍ଷ୍ୟ କରିଥିବ ଯେ ତା ପରିସ୍ଥିତିରେ ଘଟିଥିବା ପରିବର୍ତ୍ତନ ଗୁଡ଼ିକ ତା ମାନସିକ ଅବସ୍ଥାର ପରିବର୍ତ୍ତନ ସହ ଅବିକଳ ଭାବେ ସମାନୁପାତୀ । ଏ କଥା ଏତେଦୂର ସତ୍ୟ ଯେ ମଣିଷ ଯେତେବେଳେ ତା' ନିଜ ଚରିତ୍ରର ଦୋଷ ତ୍ରୁଟି ଗୁଡ଼ିକୁ ସୁଧାରିବାକୁ ନିଜେ ନିଜେ ନିଷ୍ଠାର ସହିତ ପ୍ରୟାସ କରେ ଏବଂ ସେ ଦିଗରେ ଦ୍ୱରିତ୍ ସୁଫଳ ପ୍ରାପ୍ତ ହୋଇ ଚାଲିଥାଏ, ସେତେବେଳେ ସେ ଅନେକ ଅନିଶ୍ଚିତ ପରିସ୍ଥିତିମାନଙ୍କୁ ମଧ କ୍ଷିପ୍ରତା ସହକାରେ ଅତିକ୍ରମ କରିଚାଲିଥାଏ ।

ମଣିଷର ଆତ୍ମା ଯେଉଁ ଗୋପନ ଇଚ୍ଛା ମାନଙ୍କୁ ଆଶ୍ରୟ ଦେଇଥାଏ ସେଗୁଡ଼ିକୁ ଆକର୍ଷଣ କରେ । ଅର୍ଥାତ୍ ଯେଉଁ ଗୁଡ଼ିକୁ ସେ ଶ୍ରଦ୍ଧା କରେ ଏବଂ ଯେଉଁ ଗୁଡ଼ିକୁ ଭୟକରେ ସେ ସବୁକୁ ଆକର୍ଷଣ କରେ । ଏ ସବୁର ମାତ୍ରା ଏତେ ଅଧିକ ହୋଇଯାଏ ଯେ ତା ଇପ୍‌ସିତ ଆକାଙ୍କ୍ଷାର ମାତ୍ରା ସହ ସମାନ ହୋଇଯାଏ । ଯେଉଁ ମାଧ୍ୟମ ଦ୍ୱାରା ଆତ୍ମା ତା ନିଜର ଆକାଙ୍କ୍ଷିତ ବସ୍ତୁ ପ୍ରାପ୍ତ କରେ ସେ ମାଧ୍ୟମ ହେଉଛି 'ପରିସ୍ଥିତି' ।

ଚିନ୍ତାର ପ୍ରତ୍ୟେକ ବୀଜ, ମାନସପଟରେ ସଯତ୍ନରେ ବୁଣା ହେଉ ଅଥବା ସେଠାରେ ପଡ଼ିବାକୁ ଦିଆଯାଉ; ଯଦି ସେଠାରେ ତାର ଚେର ମାଡ଼ିଲା ତେବେ ଶୀଘ୍ର ହେଉ ଅଥବା ବିଳମ୍ବରେ ହେଉ, ମଞ୍ଜି ଅନୁରୂପ ଫୁଲ ଫୁଟିବ । ପରିସ୍ଥିତି ଓ ସୁଯୋଗ ଅନୁସାରେ ସେ ଫୁଲରୁ କାର୍ଯ୍ୟ ରୂପକ ଅନୁରୂପ ଫଳ ଫଳିବ । ଭଲ ଚିନ୍ତାରୁ ଭଲ ଫଳ ଫଳିବ ଓ ଖରାପ ଚିନ୍ତାରୁ ଖରାପ ଫଳ ।

ପରିସ୍ଥିତିର ଯେଉଁ ବାହ୍ୟଜଗତ, ତାହା ନିଜକୁ ଚିନ୍ତାର ଅଭ୍ୟନ୍ତର ଜଗତ ସହ ଖାପଖୁଆଇ ନିଏ । ବାହ୍ୟ ଅବସ୍ଥାର ଉଭୟ ପ୍ରକାର, ଯଥା : ଆନନ୍ଦପ୍ରଦ ଅବସ୍ଥା ଓ ନିରାନନ୍ଦ ପ୍ରଦାୟକ ଅବସ୍ଥା - ବ୍ୟକ୍ତିର ଚରମ ଉତ୍କର୍ଷ ପାଇଁ ଉପାଦାନ । ମଣିଷ ନିଜେ ଉପୁଜାଇଥବା ଫସଲ ନିଜେ ଅମଳ କରେ, ଯନ୍ତ୍ରଣା ଓ ଆନନ୍ଦ - ଉଭୟ ପରିସ୍ଥିତିରୁ ସେ ଶିକ୍ଷାଲାଭ କରେ ।

ଅସତ୍ ଚିନ୍ତାର ଡାହାଣୀ ଆଲୁଅକୁ ଅନୁସରଣ କରି ହେଉ ଅଥବା ମହତ୍ ଉଚ୍ଚାକାଙ୍କ୍ଷାର ରାଜମାର୍ଗରେ ଦୃଢ଼ ସଂକଳ୍ପ ଯାତ୍ରା ହେଉ; ହୃଦୟର ଗଭୀରତମ

କନ୍ଦରରେ ପୋଷଣ କରିଥିବା ଆକାଙ୍କ୍ଷା, ଅଭିଳାଷ ଓ କଳ୍ପନା ଯେଉଁ ଗୁଡ଼ିକ ତା ମନକୁ ଆଚ୍ଛାଦିତ କରିଥାଏ, ସେସବୁ ପଛରେ ଅନୁଧାବନ କରି ମଣିଷ ପରିଶେଷରେ ତା ଜୀବନର ବାହ୍ୟ ଅବସ୍ଥାରେ ତଦନୁଯାୟୀ ଫଳ ପ୍ରାପ୍ତ କରେ । ବିକାଶ, ବୃଦ୍ଧି ଓ ତାଳମେଳର ନିୟମ ସବୁକ୍ଷେତ୍ରରେ କାମ କରେ ।

ଭାଗ୍ୟର ବିଡ଼ମ୍ବନାରୁ ଅଥବା ପରିସ୍ଥିତିର ତାଡ଼ନାରୁ ମଣିଷ ତା ଖରାପ ଲକ୍ଷ୍ୟସ୍ଥଳରେ ପହଞ୍ଚେ ନାହିଁ, ବରଂ ସେ ଏହା ସମପ୍ରକାର ମୂଳ ଭାବନା ଓ ଆକାଙ୍କ୍ଷାର ରାସ୍ତାରେ ବିନୀତ ଭାବେ ଅନୁସରଣ କରିବାର ଫଳ । ସତ୍‌ଚିନ୍ତା ପୋଷଣ କରୁଥିବା ମଣିଷ ଯଦି କେବେ କିଛି ଅପରାଧ କରିପକାଏ ତେବେ ସେ ଅପରାଧର କାରଣ କେବେ କୌଣସି ଆକସ୍ମିକ ବାହ୍ୟ ପରିସ୍ଥିତିର ଚାପ ହେତୁ କେବଳ ସଂଘଟିତ ହୋଇ ନପାରେ । ସେଭଳି ହୀନ କଳ୍ପନା ଦୀର୍ଘଦିନରୁ ତା ହୃଦୟ କନ୍ଦରରେ ଗୋପନରେ ବଢୁଥାଏ ଏବଂ ଉପଯୁକ୍ତ ସମୟରେ ସେ ସବୁର ପରିପକ୍ୱ ପରିପ୍ରକାଶ ଘଟେ । ପରିସ୍ଥିତି ମଣିଷକୁ ଗଠନ କରେନାହିଁ, ନିଜ ନିକଟରେ ନିଜକୁ ପ୍ରକାଶିତ କରେ । ଦୁଷ୍କର୍ମ କରିବାକୁ ଅଧୋପତନ ଘଟି, କୁକର୍ମ ପ୍ରବଣତା ଜନିତ ଅନୁରୂପ ଯନ୍ତ୍ରଣା ଭୋଗିବା; ଅଥବା ଅବିରତ ମହତ୍ ଚିନ୍ତା ନ କରି ନୈତିକତାର ଉତ୍ତୁଙ୍ଗ ଶିଖରକୁ ହଠାତ୍ ଆରୋହଣ କରିବା ଓ ଦିବ୍ୟଶାନ୍ତି ଲାଭ କରିବା ଭଳି ସେମିତି କିଛି ଅବସ୍ଥା ନାହିଁ । ସେହିକାରଣରୁ ମଣିଷ ତା ନିଜ ଚିନ୍ତାର ପ୍ରଭୁ ହିସାବରେ ତା ନିଜର ରୂପକାର, ତା ପରିବେଶର ସ୍ରଷ୍ଟା ଓ ଶିଳ୍ପୀ । ଏପରିକି ଜନ୍ମ ସମୟରୁ ତା ଆତ୍ମା ନିଜ ସ୍ୱାତନ୍ତ୍ର୍ୟରେ ସମୃଦ୍ଧଥାଏ ଏବଂ ଜୀବନର ଗତିପଥର ପ୍ରତ୍ୟେକ ପଦକ୍ଷେପରେ ନିଜକୁ ପରିପ୍ରକାଶ କରୁଥିବା ଅବସ୍ଥା ଗୁଡ଼ିକୁ ଆକର୍ଷିତ କରି ଚାଲିଥାଏ । ଏହି ସବୁ ଅବସ୍ଥା ଗୁଡ଼ିକର ସମାହାର ତା ନିଜକୁ, ନିଜର ସମସ୍ତ ସାମର୍ଥ୍ୟ ତଥା ଦୁର୍ବଳତା ଗୁଡ଼ିକୁ ପ୍ରତିଫଳିତ କରେ ।

ମଣିଷ ଯାହା ଇଚ୍ଛାକରେ ସେସବୁକୁ ଆକର୍ଷିତ କରେ ନାହିଁ ବରଂ ସେ ନିଜେ ଯାହା, ସେହିପରି ସବୁକିଛିକୁ ଆକର୍ଷଣ କରେ । ନିଜର କଳ୍ପନା, ଖିଆଲ ଓ ଆକାଙ୍କ୍ଷାମାନ ପ୍ରତି ପଦକ୍ଷେପରେ ବିଫଳ ହେଉଥିବା ବେଳେ ହୃଦୟର ଗଭୀରତମ ସତ୍, ଅସତ୍ ଚିନ୍ତା ଓ ଅଭିଳାଷ ଗୁଡ଼ିକ ନିଜ ନିଜର ଖାଦ୍ୟ ଗ୍ରହଣ କରି ପରିପୁଷ୍ଟ ହେଉଥାଆନ୍ତି । ଯେଉଁ ଦିବ୍ୟ ସତ୍ତା ମଣିଷର ଅନ୍ତିମ ଲକ୍ଷ ପ୍ରାପ୍ତିରେ ସହାୟକ, ତାହା ନିଜ ଭିତରେ ଥାଏ । ତାହା ହିଁ ଆତ୍ମାର ପ୍ରକୃତ ସ୍ୱରୂପ । ମଣିଷ କେବଳ ତା ନିଜଦ୍ୱାରା ବନ୍ଧନକୁ ଡାକିଆଣେ । ଚିନ୍ତା ଓ କାର୍ଯ୍ୟ ହେଉଛନ୍ତି ଭାଗ୍ୟ ରୂପକ କାରାଗାର । ଘୃଣ୍ୟ ରୂପରେ ସେମାନେ ମଣିଷର ବ୍ୟକ୍ତିତ୍ୱକୁ ବେଡି ପିନ୍ଧାଇ ଦିଅନ୍ତି । ଦିବ୍ୟ ରୂପରେ ସେମାନେ ମଧ ଉନ୍ମୁକ୍ତତାର ଦେବଦୂତ,

ଉତ୍କୃଷ୍ଟ ରୂପରେ ସେମାନେ ମଣିଷର ଉଦ୍ଧାରକର୍ତ୍ତା । ମଣିଷ ଯାହା ଇଚ୍ଛାକରେ କେବଳ ପ୍ରାର୍ଥନା କଲେ ସେସବୁ ପାଏନାହିଁ, ସେସବୁକୁ ସେ ଯଥାର୍ଥରେ ହାସଲ କରିଥାଏ । ମଣିଷର ଇପ୍‌ସିତ ଆକାଙ୍‌କ୍ଷା ଓ ସେସବୁ ପ୍ରାପ୍ତି ନିମନ୍ତେ ପ୍ରାର୍ଥନା ଯେତେବେଳେ ତା ଚିନ୍ତା ଓ କାର୍ଯ୍ୟଧାରା ସହ ସୁସଂହତ ହୁଏ ସେତେବେଳେ ସେ ସବୁ ଫଳବତୀ ହୁଅନ୍ତି ।

ତେବେ 'ସତ୍ୟ' ପରିପ୍ରେକ୍ଷୀରେ "ପରିସ୍ଥିତି ବିରୁଦ୍ଧରେ ଲଢ଼ିବା"ର ଅର୍ଥ କଣ ? ଏହାର ଅର୍ଥ ହେଉଛି ଏହି ଯେ, କୌଣସି ଏକ ବାହ୍ୟ ଫଳାଫଳ ବିରୁଦ୍ଧରେ ମଣିଷ ଅହରହ ବିଦ୍ରୋହ କରୁଛି କିନ୍ତୁ ସେସବୁର କାରଣ ଗୁଡ଼ିକୁ ହୃଦୟକନ୍ଦରରେ ସାଇତି ରଖି ଅବିରତ ସେଗୁଡ଼ିକର ପୁଷ୍ଟିସାଧନ କରିଚାଲିଛି । ସେହି କାରଣ ଗୁଡ଼ିକ ସଚେତନ ଦୁଷ୍କର୍ମ ଆକାରରେ ଅଥବା କୌଣସି ଅବଚେତନ ଦୁର୍ବଳତାର ରୂପ ନେଇପାରନ୍ତି । ଯେଉଁ ରୂପରେ ହେଉନା କାହିଁକି, ଏ ସବୁର ଅଧିକାରୀ ବ୍ୟକ୍ତିର ପ୍ରୟାସ ଗୁଡ଼ିକୁ ଏମାନେ ଦୃଢ଼ଭାବେ ପ୍ରତିହତ କରନ୍ତି । ତେଣୁ ଏ ସବୁର ତୁରନ୍ତ ପ୍ରତିକାର ଲୋଡ଼ା ।

ମଣିଷ ତା ପରିବେଶକୁ ଉନ୍ନତ କରିବା ପାଇଁ ଖୁବ୍ ବ୍ୟଗ୍ର କିନ୍ତୁ ନିଜକୁ ଉନ୍ନତ କରିବା ପାଇଁ ଅନିଚ୍ଛୁକ । ସେହି କାରଣରୁ ସେ ବେଡି ପିନ୍ଧିଥାଏ ।

ଯେଉଁ ବ୍ୟକ୍ତିର ଆତ୍ମବିନାଶ ଜନିତ ସଙ୍କୋଚନ ଘଟେନାହିଁ ସେହି ବ୍ୟକ୍ତି ତା ଇପ୍‌ସିତ କାମନା ପ୍ରାପ୍ତ ହେବାରୁ କେବେହେଲେ ବଞ୍ଚିତ ହୁଏନାହିଁ । ପାର୍ଥିବ ତଥା ସର୍ଗୀୟ ବିଷୟ ଗୁଡ଼ିକ କ୍ଷେତ୍ରରେ ଏହା ସତ୍ୟ । ଏପରିକି ଯେଉଁବ୍ୟକ୍ତିର ଏକମାତ୍ର ଲକ୍ଷ୍ୟ ହେଉଛି ଧନସମ୍ପତ୍ତି ଠୁଳ କରିବା, ସେହି ଲକ୍ଷ୍ୟ ପ୍ରାପ୍ତି ପାଇଁ ତାକୁ ଯଥେଷ୍ଟ ବ୍ୟକ୍ତିଗତ ତ୍ୟାଗ କରିବାକୁ ପଡ଼ିବ । ଏକ ଉତ୍ତମ ସୁନିୟନ୍ତ୍ରିତ ଜୀବନ ପାଇଁ ତ୍ୟାଗର ପରିମାଣ କେତେ ଅଧିକ ସେ କଥା ଅନୁଭବୀ କେବଳ ହୃଦୟଙ୍ଗମ କରିପାରିବ ।

ଏଠାରେ ଏପରି ଜଣେ ବ୍ୟକ୍ତିଙ୍କ କଥା ବିଚାରକୁ ନିଆଯାଉ । ସେ ଅତ୍ୟନ୍ତ ଭାବେ ଦରିଦ୍ର । ତାଙ୍କ ପାରିପାର୍ଶ୍ୱିକ ପରିସ୍ଥିତି ଓ ପାରିବାରିକ ସାଚ୍ଛନ୍ଦ୍ୟର ଅଭିବୃଦ୍ଧି ନିମନ୍ତେ ସେ ଅତ୍ୟନ୍ତ ବ୍ୟଗ୍ର କିନ୍ତୁ ସବୁବେଳେ ସେ ନିଜ କର୍ତ୍ତବ୍ୟକୁ ଫାଙ୍କିନ୍ତି ଏବଂ ତାଙ୍କ ନିଯୁକ୍ତି ଦାତାଙ୍କୁ ଠକିଲା ବେଳେ ବିଚାରନ୍ତି ଯେ ସେ ଠିକ୍ କରୁଛନ୍ତି କାରଣ ତାଙ୍କୁ ଦିଆଯାଉଥିବା ମଜୁରୀ ଯଥେଷ୍ଟ ନୁହେଁ । ପ୍ରକୃତ ସମୃଦ୍ଧିପ୍ରାପ୍ତିର ସରଳ ନିୟମ ଗୁଡ଼ିକୁ ଏ ବ୍ୟକ୍ତି ବୁଝିପାରନ୍ତି ନାହିଁ । ସେହି କାରଣରୁ ନିଜ ଦୈନ୍ୟ ଦୁର୍ଦ୍ଦଶାରୁ ମୁକୁଳିବାକୁ ସେ ସମ୍ପୂର୍ଣ୍ଣ ଅଯୋଗ୍ୟ । କେବଳ ସେତିକି ନୁହେଁ; ଆଳସ୍ୟ ପରାୟଣ, ପ୍ରବଞ୍ଚନାତ୍ମକ, ଶ୍ରମକାତର, ଅନିଚ୍ଛା ପରାୟଣ ତଥା ଅମାନବୀୟ ଚିନ୍ତାଧାରା ପୋଷଣ କରୁଥିବା ଯୋଗୁଁ ପ୍ରକୃତରେ ସେହି ଗୁଣାବଳୀକୁ ଅଧିକମାତ୍ରାରେ ଆକର୍ଷଣ କରି ନିଜ ଦୁର୍ଦ୍ଦଶାକୁ ଅଧିକ ଋଦ୍ଧିମନ୍ତ କରିଚାଲିଛନ୍ତି ।

ଇଏ ହେଉଛି ଜଣେ ଧନଶାଳୀ ବ୍ୟକ୍ତିଙ୍କ କାହାଣୀ ଯିଏ ଅତିରିକ୍ତ ଭୋଜନ କାରଣରୁ ଉଦରାମୟ ରୋଗର ଯନ୍ତ୍ରଣା ଭୋଗୁଛନ୍ତି । ଆରୋଗ୍ୟଲାଭ ପାଇଁ ପର୍ଯ୍ୟାପ୍ତ ପରିମାଣ ଅର୍ଥ ବ୍ୟୟ କରିବାକୁ ସେ ପ୍ରସ୍ତୁତ କିନ୍ତୁ ତାଙ୍କ ଖାଦ୍ୟ ଲାଳସାକୁ ଛାଡ଼ିବାକୁ ପ୍ରସ୍ତୁତ ନୁହଁନ୍ତି । ଏଣେ ଅପ୍ରାକୃତିକ ଗରିଷ୍ଠ ଖାଦ୍ୟକୁ ଲୋଭ ତେଣେ ସ୍ୱାସ୍ଥ୍ୟକୁ ଲୋଭ । ଏ ପ୍ରକାର ବ୍ୟକ୍ତି ସ୍ୱାସ୍ଥ୍ୟ ଲାଭ ପାଇଁ ସମ୍ପୂର୍ଣ୍ଣ ଅଯୋଗ୍ୟ କାରଣ ଏ ପର୍ଯ୍ୟନ୍ତ ସୁସ୍ଥଜୀବନର ପ୍ରଥମ ନିୟମ ସେ ଶିକ୍ଷା କରିନାହାନ୍ତି ।

ଶ୍ରମିକ ମାନଙ୍କୁ ଖଟାଉଥିବା ଆଉ ଜଣେ ବ୍ୟକ୍ତିଙ୍କ ବିଷୟ ଦେଖାଯାଉ । ଅସଦ୍ ଉପାୟ ଅବଲମ୍ବନ କରି ସେ ଶ୍ରମିକମାନଙ୍କ ନ୍ୟାଯ୍ୟ ପାଉଣାରୁ କମ୍ ଦିଅନ୍ତି । ଅଧିକ ଲାଭ କରିବା ମନୋବୃତ୍ତିରୁ ନିଜ ଅଧିନରେ ଖଟୁଥିବା ଶ୍ରମିକମାନଙ୍କ ମଜୁରି ଊଣାକରି ପ୍ରଦାନ କରନ୍ତି । ଏହିଭଳି ବ୍ୟକ୍ତି ସମୃଦ୍ଧି ପ୍ରାପ୍ତ ହେବାକୁ ସମ୍ପୂର୍ଣ୍ଣ ଅଯୋଗ୍ୟ । ଏଭଳି ବ୍ୟକ୍ତି ଯେତେବେଳେ ସର୍ବସ୍ୱ ହରାଇ ଦେବାଳିଆ ହୋଇ ଯାଆନ୍ତି ସେତେବେଳେ ପରିବେଶକୁ ଦାୟୀ କରନ୍ତି । କିନ୍ତୁ ସେ ନିଜେ ଯେ ତାଙ୍କ ଅବସ୍ଥାର ନିର୍ମାତା ଏକଥା ତାଙ୍କୁ ଜଣା ନଥାଏ ।

ଯଦିଓ ସବୁବେଳେ, ପ୍ରାୟତଃ ଅବଚେତନ ଭାବରେ, ତଥାପି ମଣିଷ ନିଜେ ତାହାର ଅବସ୍ଥାର ସୃଷ୍ଟିକର୍ତ୍ତା, ଏକଥା ଦର୍ଶାଇବାକୁ ଏହି ତିନୋଟି ଉଦାହରଣ ଦେଲି । ଅନେକ ସମୟରେ ଲକ୍ଷ୍ୟ ଯଦିଓ ଉତ୍ତମ ତଥାପି ତା ଚିନ୍ତାଧାରା ଓ କାର୍ଯ୍ୟପଦ୍ଧତି ତଦନୁରୂପ ନହୋଇଥିବା ଦୃଷ୍ଟିରୁ ଲକ୍ଷ୍ୟ ସହ ମେଳଖାଏ ନାହିଁ ଓ ନୈରାଶ୍ୟ ଜନକ ଫଳ ପ୍ରାପ୍ତ ହୁଏ । ଏହିଭଳି ବହୁପ୍ରକାରର ଉଦାହରଣମାନ ଦେଖିବାକୁ ମିଳେ ଯାହାର ସୀମା ନାହିଁ । ତେବେ ପାଠକ ଯଦି ନିଜ ମନରେ ଓ ନିଜ ଜୀବନରେ ଭାବନାର ନିୟମମାନଙ୍କୁ ପ୍ରୟୋଗ କରିବା ନିମନ୍ତେ ଦୃଢ଼ ସଂକଳ୍ପ ହେବେ, ସେପରି ହେବା ପର୍ଯ୍ୟନ୍ତ ବାହ୍ୟ କାରଣ ମାନଙ୍କୁ କେବଳ ମାତ୍ର ନିର୍ଦ୍ଧାରକ କାରଣ ଭାବେ ବିବେଚନା କରିବାର ଆବଶ୍ୟକତା ନାହିଁ ।

ପରିସ୍ଥିତି ଗୁଡ଼ିକ କିନ୍ତୁ ଖୁବ୍ ଜଟିଳ । ଚିନ୍ତା ଗୁଡ଼ିକର ଚେର ଖୁବ୍ ଗଭୀରକୁ ବ୍ୟାପ୍ତ । ସାଚ୍ଛନ୍ଦ୍ୟର ପରିଭାଷା ବ୍ୟକ୍ତିବିଶେଷଙ୍କ କ୍ଷେତ୍ରରେ ଭିନ୍ନ ଭିନ୍ନ ଏବଂ ଅତ୍ୟଧିକ । ଏପରିସ୍ଥଳେ ଜଣେ ମଣିଷର ସାମଗ୍ରୀକ ବ୍ୟକ୍ତିଗତ ଅବସ୍ଥା (ଯଦିଓ ସେ ନିଜେ ଏ ବିଷୟରେ ଅବଗତ ଥାଇପାରେ)କୁ କେବଳ ତା ଜୀବନର ବାହ୍ୟ ପରିସ୍ଥିତି ଆଧାରରେ ଅନ୍ୟଜଣେ ବ୍ୟକ୍ତି ସଠିକ୍ ଭାବେ ମୂଲ୍ୟାୟନ କରିପାରିବ ନାହିଁ । କେତେକ ଦୃଷ୍ଟିରୁ ଜଣେ ବ୍ୟକ୍ତି ହୁଏତ ସଚ୍ଚୋଟ ହୋଇଥିଲେ ମଧ ଅନ୍ୟ ଦୃଷ୍ଟିରୁ ତାର ଅଭାବ ଥାଇପାରେ । ଅନ୍ୟଜଣେ ହୁଏତ କେତେକ ଦିଗରୁ ଅସାଧୁ ପ୍ରକୃତିର ହୋଇଥାଇପାରେ ତଥାପି ଧନଶାଳୀ ହୋଇପାରେ । କିନ୍ତୁ କେବଳ ଏତିକି କଥାରୁ ନିଧାର୍ଯ୍ୟ କରାଯାଇ ନପାରେ ଯେ ପ୍ରଥମୋକ୍ତ

ଲୋକଟି ତା ସାଧୁତା କାରଣରୁ ବିଫଳ ହୋଇଛି ଓ ଅନ୍ୟ ଲୋକଟି ତା ଅସାଧୁ ପ୍ରକୃତିରୁ ସଫଳ ହୋଇଛି । ଏଭଳି ସିଦ୍ଧାନ୍ତରେ ଉପନୀତ ହେବା ଉପରଠାଉରିଆ ବିଚାରର ଫଳ ଅର୍ଥାତ୍, ଏଥିରେ ଧରିନିଆଯାଇଛି ଯେ ଅସାଧୁ ଚରିତ୍ରର ବ୍ୟକ୍ତିଟି ସମ୍ପୂର୍ଣ୍ଣ ରୂପେ ଅସାଧୁ ଏବଂ ସାଧୁ ପ୍ରକୃତିର ବ୍ୟକ୍ତି ସମ୍ପୂର୍ଣ୍ଣ ସତ୍‌ଚରିତ୍ର ସମ୍ପନ୍ନ । ଜ୍ଞାନର ଗଭୀରତା ଓ ପର୍ଯ୍ୟାପ୍ତ ଅନୁଭୂତି ଆଧାରରେ ବିଚାର କଲେ ଏଭଳି ସିଦ୍ଧାନ୍ତ ତ୍ରୁଟିପୂର୍ଣ୍ଣ ବୋଲି ଜଣାଯିବ । ହୁଏତ ଅସାଧୁ ଚରିତ୍ରର ବ୍ୟକ୍ତିଟି ନିକଟରେ ଏମିତି କିଛି ଶ୍ରେଷ୍ଠଗୁଣ ଅଛି ଯାହା ଅନ୍ୟ ଲୋକଟିର ନାହିଁ । ସାଧୁ ଚରିତ୍ରର ବ୍ୟକ୍ତିଟି ତା ସାଧୁ ପ୍ରକୃତିର ଉତ୍ତମ ଫଳ ଭୋଗ କରିବା ସଙ୍ଗେ ସଙ୍ଗେ ହୁଏତ ନିଜ ଅନ୍ତରର କୁଚିନ୍ତାର ଫଳ ମଧ ଭୋଗ କରୁଛି । ଅସାଧୁ ଚରିତ୍ର ବ୍ୟକ୍ତିଟି ସେହିପରି ତା ଭଲ ଓ ମନ୍ଦ ଚିନ୍ତାର ଫଳମାନ ଭୋଗ କରୁଛି ।

"ଭଲ ମଣିଷ ମାନେ ବିଚରା ନିଜର ଭଲ ଗୁଣ ଗୁଡ଼ିକ ଯୋଗୁଁ ହିଁ ଦୁଃଖ ପାଇଥାଆନ୍ତି" - ଏପରି ଭାବିବା ଆମ ଅହଂକୁ ସାନ୍ତ୍ୱନା ଦେଇଥାଏ । କିନ୍ତୁ ଯେ ପର୍ଯ୍ୟନ୍ତ ଜଣେ ନିଜର ଖରାପ ଚିନ୍ତା ଗୁଡ଼ିକୁ ମନରୁ ନିଷ୍କାସିତ କରି ସମସ୍ତ ପାପଚିନ୍ତାରୁ ନିଜ ଆତ୍ମାକୁ ମୁକ୍ତ ନ କରିଛି ସେ ପର୍ଯ୍ୟନ୍ତ ସେ ଏମିତି କହିବା ଉଚିତ୍ ହେବନାହିଁ । ସର୍ବୋଚ୍ଚ ସିଦ୍ଧିର ସୁଦୀର୍ଘ ଯାତ୍ରାପଥରେ ଅଗ୍ରସର ହେବାର ବହୁପୂର୍ବରୁ ସେ ଆବିଷ୍କାର କରିଥିବ ଯେ ତା ମନ ଓ ଜୀବନ କ୍ଷେତ୍ରରେ କାର୍ଯ୍ୟକରୁଥିବା ମହାନ ନିୟମ ନିରଙ୍କୁଶ ଭାବେ ଯଥାର୍ଥ ଏବଂ ନ୍ୟାୟ ସଙ୍ଗତ ହୋଇଥିବା ଦୃଷ୍ଟିରୁ ଖରାପ କାମ ପାଇଁ କେବେହେଲେ ଭଲଫଳ ପ୍ରଦାନ କରିବ ନାହିଁ କିମ୍ବା ଭଲକାମ ପାଇଁ ଖରାପ ଫଳ ପ୍ରଦାନ କରିବ ନାହିଁ । ଏହିଭଳି ଜ୍ଞାନର ଅଧିକାରୀ ହେଲେ ତା ନିଜର ପୂର୍ବ ଅଜ୍ଞତା ଓ ଅନ୍ଧାନୁସରଣ ପ୍ରତି ଦୃଷ୍ଟି ନିକ୍ଷେପ କରି ସେ ଜାଣିପାରିବ ଯେ ତା ଜୀବନକ୍ରମ ସବୁବେଳେ ଉଚିତ୍ ନିୟମ ମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା ଏବଂ ସେହିପରି ହେଉଥିବ ମଧ । ସମସ୍ତ ଅତୀତ ଅଭିଜ୍ଞତା, ଭଲ ହେଉ ବା ମନ୍ଦ ହେଉ, ତା ନିଜ ବିବର୍ତ୍ତନର ଯଥାର୍ଥ ବାହ୍ୟ ପରିପ୍ରକାଶ କିନ୍ତୁ ତଥାପି ତା ଆତ୍ମାର ଅନେକ ବିବର୍ତ୍ତନ ବାକିଅଛି ।

ଉତ୍ତମ ଚିନ୍ତା ଓ କାର୍ଯ୍ୟ କେବେହେଲେ ଖରାପ ଫଳ ପ୍ରଦାନ କରି ନ ପାରନ୍ତି । ଖରାପ ଚିନ୍ତା ଓ ଖରାପ କାର୍ଯ୍ୟ କେବେହେଲେ ଭଲଫଳ ପ୍ରଦାନ କରିପାରିବେ ନାହିଁ । ଅନ୍ୟ ପ୍ରକାରେ କହିବାକୁ ଗଲେ, ଧାନ ଗଛରୁ ଧାନ ହିଁ ଫଳିବ - ଅନ୍ୟ କିଛି ନୁହେଁ । ପ୍ରାକୃତିକ ବିଶ୍ୱରେ ମଣିଷ ଏହି ନିୟମଟିକୁ ବୁଝି ସେହି ଅନୁସାରେ କାର୍ଯ୍ୟ କରେ । କିନ୍ତୁ ଖୁବ୍ କ୍ୱଚିତ୍ ଲୋକ ଏହି ନିୟମଟିକୁ ନୈତିକ ଏବଂ ମାନସିକ ଜଗତରେ ବୁଝିପାରନ୍ତି ଯଦିଓ ସେଠାରେ ଏହାର କାର୍ଯ୍ୟକାରୀତା ଅତ୍ୟନ୍ତ ସରଳ ଏବଂ ଅବ୍ୟର୍ଥ । ଏଥିରେ

କେବେହେଲେ ବିଚ୍ୟୁତି ଘଟୁନାହିଁ । ସେଇକାରଣରୁ ମଣିଷ ଏଥିସହିତ ସହଯୋଗ କରେନାହିଁ ।

ପୀଡ଼ା ଭୋଗିବା ସବୁବେଳେ କୌଣସି ନା କୌଣସି ମନ୍ଦ ଚିନ୍ତାର ଫଳ । ଏହା ସୂଚାଇଦିଏ ଯେ ବ୍ୟକ୍ତି ତା ନିଜର ସଙ୍ଗତି ଠାରୁ, ନିଜ ଆତ୍ମ ସତ୍ତାର ନୀୟମ ଠାରୁ ଦୂରେଇ ଯାଇଛି । ଯାତନାର ଏକମାତ୍ର ଏବଂ ମହତ ଉଦ୍ଦେଶ୍ୟ ହେଉଛି ଶୋଧନ କରିବା, ଯାହାସବୁ ଅଦରକାରୀ ଓ କଳୁଷିତ ସେ ସମସ୍ତକୁ ଜାଳିପୋଡ଼ି ଧ୍ୱଂସ କରିଦେବା । ଯିଏ ଶୁଦ୍ଧ ତା ପାଇଁ ଯାତନାର ସ୍ଥାନ ନାହିଁ । ସୁନାରୁ ସମସ୍ତ ଖାଦ ପୋଡ଼ିଗଲାପରେ ଆଉ ପୋଡ଼ିବାର ଆବଶ୍ୟକତା ନଥାଏ । ଯିଏ ସମ୍ପୂର୍ଣ୍ଣ ଶୁଦ୍ଧ ଏବଂ ଦିବ୍ୟଜ୍ଞାନପ୍ରାପ୍ତ ସେ ଯାତନା ଭୋଗି ନପାରେ ।

ପୀଡ଼ା ଭୋଗ କରୁଥିବା ମଣିଷର ପରିସ୍ଥିତିମାନ ତା ନିଜ ମାନସିକ ଅସନ୍ତୁଳନର ଫଳ । ଦିବ୍ୟ ଆନନ୍ଦରେ ବିଭୋର ମଣିଷର ପରିସ୍ଥିତିମାନ ତା ନିଜ ମାନସିକ ସନ୍ତୁଳନର ଫଳ । ପାର୍ଥିବ ଧନସମ୍ପଦ ନୁହେଁ, କେବଳ ଦିବ୍ୟ ଆନନ୍ଦ ହିଁ ସତ୍ ଚିନ୍ତାର ପରିମାପକ । ଅନ୍ୟପକ୍ଷରେ ପାର୍ଥିବ ସମ୍ପଦର ଅଭାବ ନୁହେଁ, ଦୁଃସ୍ଥ ହୀନହୀନ ଅବସ୍ଥା ହିଁ ଅସତ୍ ଚିନ୍ତାର ପରିମାପକ । କୌଣସିବ୍ୟକ୍ତି ହୁଏତ ଅଭିଶପ୍ତ ହେବାସ୍ଥଳେ ସମ୍ପଦର ଅଧିକାରୀ ହୋଇପାରେ, ନତୁବା ଦିବ୍ୟ ଆନନ୍ଦର ଅଧିକାରୀ ହେବା ସତ୍ତ୍ୱେ ଦରିଦ୍ର ମଧ୍ୟ ହୋଇପାରେ । ଦିବ୍ୟ ଆନନ୍ଦ ଓ ଧନସମ୍ପତ୍ତିର ସଂଯୋଗ ସେତେବେଳେ ଘଟିବ ଯେତେବେଳେ ଧନସମ୍ପତ୍ତିର ସତ୍ ଏବଂ ଯଥାର୍ଥ ଉପଯୋଗ କରାଯିବ । ଦରିଦ୍ର ବ୍ୟକ୍ତିଟି ଯେତେବେଳେ ହୃଦୟଙ୍ଗମ କରିବ ଯେ ତା ଭାଗ୍ୟ ତା ଉପରେ ଅନ୍ୟାୟ ଭାବେ ଲଦି ଦିଆଯାଇଥିବା ବୋଝ ସଦୃଶ, ସେତେବେଳେ ହିଁ ଦାରିଦ୍ର୍ୟରୁ ଦୈନ୍ୟକୁ ତାର ଅଧୋପତନ ଘଟିବ ।

ଦାରିଦ୍ର୍ୟ ଓ ଉପଭୋଗ ହେଉଛନ୍ତି ଅସୁଖୀ ହେବାର ଦୁଇଟି ଚରମ ଅବସ୍ଥା । ଏ ଦୁଇଟିଯାକ ଅବସ୍ଥା ଅପ୍ରାକୃତ ଏବଂ ମାନସିକ ବିଶୃଙ୍ଖଳତାର ଫଳ । ଯେ ପର୍ଯ୍ୟନ୍ତ ମଣିଷ ସୁଖ ଅନୁଭବ କରୁନାହିଁ, ସ୍ୱାସ୍ଥ୍ୟବାନ ନୁହେଁ ଏବଂ ସମୃଦ୍ଧ ନୁହେଁ ସେ ପର୍ଯ୍ୟନ୍ତ ସେ ଉପଯୁକ୍ତ ଭାବେ ବଞ୍ଚିବାର ଯୋଗ୍ୟତା ହାସଲ କରିନାହିଁ । ସୁଖ, ସ୍ୱାସ୍ଥ୍ୟ, ସମୃଦ୍ଧି ହେଉଛନ୍ତି ଅନ୍ତରାତ୍ମା ସହ ବାହ୍ୟ ପରିସ୍ଥିତିର ସୁସଂହତ ତାଳମେଳର ଫଳ । ମଣିଷ ତାହାର ବାହ୍ୟ ପରିବେଶ ସହ ମେଳଖୁଆଇବାର ଫଳ ।

ମଣିଷ ଯେତେବେଳେ କଳିଝଗଡ଼ା କରିବା ଓ ତିରସ୍କାର କରିବା ବନ୍ଦ କରିବ ସେତେବେଳେ ସେ ମଣିଷ ପଦବାଚ୍ୟ ହେବାକୁ ଆରମ୍ଭ କରିବ ଏବଂ ତା ଜୀବନକୁ ନିୟନ୍ତ୍ରଣ କରୁଥିବା ଗୁପ୍ତ ସତ୍ୟର ସନ୍ଧାନ କରିବାକୁ ଲାଗିବ । ସେହି ନିୟନ୍ତ୍ରକ ଉପାଦାନ

ସହ ନିଜ ମନକୁ ଖାପ ଖୁଆଇ ନେବାକୁ ଆରମ୍ଭ କଲାମାତ୍ରେ ମଣିଷ ତା ନିଜ ଅବସ୍ଥା ସକାଶେ ଅନ୍ୟମାନଙ୍କୁ ଦୋଷାରୋପ କରିବା ବନ୍ଦ କରିଦେବ କିନ୍ତୁ ଦୃଢ଼ ଓ ମହତ ଚିନ୍ତାଧାରାରେ ନିଜକୁ ଗଢ଼ିବାକୁ ଲାଗିବ । ପରିସ୍ଥିତି ମାନଙ୍କ ପ୍ରତି ପଦାଘାତ କରିବା ପରିବର୍ତ୍ତେ ସେଗୁଡ଼ିକୁ ନିଜର ତ୍ୱରିତ ବିକାଶର ସହାୟକ ହିସାବରେ ପ୍ରୟୋଗ କରିବାକୁ ଆରମ୍ଭ କରିବ । ନିଜ ଭିତରେ ଲୁକ୍‌କାୟିତ ସାମର୍ଥ୍ୟ ଓ ସମ୍ଭାବନା ମାନଙ୍କୁ ଆବିଷ୍କାର କରିବାର ମାଧ୍ୟମ ଭାବେ ପରିସ୍ଥିତିକୁ ବିନିଯୋଗ କରିବ ।

ବିଶ୍ୱବ୍ରହ୍ମାଣ୍ଡରେ ବିଶୃଙ୍ଖଳା ନୁହେଁ, ଶୃଙ୍ଖଳିତ ନିୟମ ମାନଙ୍କର ଆଧିପତ୍ୟ ରହିଛି । ଅନ୍ୟାୟ ନୁହେଁ, ନ୍ୟାୟ ହେଉଛି ଜୀବନର ସାରାଂଶ ଏବଂ ଆତ୍ମା । ଦୁର୍ନୀତି ନୁହେଁ, ନୀତିନିଷ୍ଠତା ହେଉଛି ବିଶ୍ୱବ୍ରହ୍ମାଣ୍ଡର ଆଧାତ୍ମିକ ପରିଚାଳନା ପାଇଁ ଅନିବାର୍ଯ୍ୟ ଚାଳନଶକ୍ତି । ଏପରି ହୋଇଥିବା କାରଣରୁ ମଣିଷ ପ୍ରଥମେ ନିଜକୁ ଠିକ୍ କଲେ ବିଶ୍ୱ ବ୍ରହ୍ମାଣ୍ଡକୁ ଠିକ୍ ରୂପେ ଦେଖିପାରିବ । ନିଜକୁ ଠିକ୍ କରିବାର ପ୍ରକ୍ରିୟା ମାଧ୍ୟମରେ ସେ ଆବିଷ୍କାର କରିବ ଯେ ସେ ଯେତେବେଳେ ବସ୍ତୁ ଓ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ତା ଚିନ୍ତାଧାରାକୁ ଅନୁକୂଳିତ କରି ପରିବର୍ତ୍ତନ କରୁଛି ସେତେବେଳେ ବସ୍ତୁ ଓ ଅନ୍ୟାନ୍ୟ ବ୍ୟକ୍ତିମାନେ ତା ଆଡ଼କୁ ଅନୁକୂଳ ଭାବେ ପରିବର୍ତ୍ତିତ ହେଉଛନ୍ତି ।

ଏହି ସତ୍ୟର ପ୍ରମାଣ ପ୍ରତ୍ୟେକ ବ୍ୟକ୍ତିସତ୍ତାରେ ବିଦ୍ୟମାନ । ସେହି କାରଣରୁ ସୁଶୃଙ୍ଖଳ ଆତ୍ମ ବିଶ୍ଳେଷଣ ଓ ଅନ୍ତର୍ଦୃଷ୍ଟି ସମ୍ପନ୍ନ ଆତ୍ମ ସମୀକ୍ଷା ଦ୍ୱାରା ଏହି ସତ୍ୟକୁ ସହଜରେ ଅନୁସନ୍ଧାନ କରାଯାଇପାରିବ । ମଣିଷ ଯଦି ତା' ଚିନ୍ତାଧାରାକୁ ସମ୍ପୂର୍ଣ୍ଣ ବଦଳାଇ ଦେବ ତେବେ ତଦ୍ୱାରା ତା ଜୀବନର ବାସ୍ତବ ଅବସ୍ଥା କିଭଳି ତ୍ୱରିତ୍ ରୂପାନ୍ତରିତ ହେଉଛି ତାହା ଦେଖି ନିଜେ ବିସ୍ମିତ ହେବ । ଲୋକମାନଙ୍କ ଧାରଣା ଯେ ଚିନ୍ତାକୁ ଗୋପନ ରଖାଯାଇପାରିବ କିନ୍ତୁ ସେପରି ହୋଇପାରିବ ନାହିଁ । ଚିନ୍ତାଗୁଡ଼ିକ ଖୁବ୍‌ଶୀଘ୍ର ଦାନାବାନ୍ଧି ଅଭ୍ୟାସ ରେ ପରିଣତ ହୋଇଯାଆନ୍ତି ଏବଂ ଅଭ୍ୟାସ ଗୁଡ଼ିକର କଠିନ ଅବସ୍ଥା ହେଉଛି ପରିସ୍ଥିତି । ପାଶବିକ ଚିନ୍ତା ଗୁଡ଼ିକ ଦାନା ବାନ୍ଧିଲେ ମଦ୍ୟପାନ, ଯୌନାଚାର ପ୍ରଭୃତି ଅଭ୍ୟାସମାନ ସୃଷ୍ଟି ହୁଅନ୍ତି ଏବଂ ସେ ସବୁ ଅଭ୍ୟାସରୁ ଯେଉଁ ପରିସ୍ଥିତି ଉପୁଜେ ସେ ସବୁର ପରିଣାମ ହେଉଛି ଚରମ ଦାରିଦ୍ର୍ୟ, ଶାରୀରିକ ଓ ମାନସିକ ଅସୁସ୍ଥତା । ସମସ୍ତ ପ୍ରକାର ଦୂଷିତ ଚିନ୍ତା ଗୁଡ଼ିକ ଯେତେବେଳେ ଦାନାବାନ୍ଧନ୍ତି ସେତେବେଳେ ଦୁର୍ବଳ ଏବଂ ଗୋଳମାଳିଆ ଅଭ୍ୟାସ ସବୁ ସୃଷ୍ଟି ହୁଅନ୍ତି, ଯାହାର ପରିଣାମ ସ୍ୱରୂପ ବିଭ୍ରାନ୍ତିକର ପ୍ରତିକୂଳ ପରିସ୍ଥିତିମାନ ସୃଷ୍ଟିହୁଅନ୍ତି ଅର୍ଥାତ୍; ଭୟ, ସନ୍ଦେହ, ଅନିଶ୍ଚିତତା ପ୍ରଭୃତି ଚିନ୍ତା ଦାନା ବାନ୍ଧିଲେ ଦୁର୍ବଳ, ଅମାନବିକ ଅଭ୍ୟାସ ଗୁଡ଼ିକ ସୃଷ୍ଟି ହୁଅନ୍ତି, ଚିତ୍ତ ଅସ୍ଥିର ହୁଏ । ଏଭଳି ଅଭ୍ୟାସ

ଜନିତ ଯେଉଁ ପରିସ୍ଥିତି ସୃଷ୍ଟିହୁଏ ତାହା ହେଉଛି ବିଫଳତା, ଦାରିଦ୍ର୍ୟ, ଦାସତ୍ୱ ଓ ହୀନ ନିର୍ଭରଶୀଳତା । ଆଳସ୍ୟ ଚିନ୍ତା ଗୁଡ଼ିକ ଅପରିଚ୍ଛନ୍ନତା ଓ ଅସାଧୁ ଅଭ୍ୟାସ ମାନଙ୍କରେ ଦାନା ବାନ୍ଧନ୍ତି । ସେସବୁ ଯେଉଁ ପରିସ୍ଥିତିକୁ ଡାକିଆଣନ୍ତି ତାହା ଦୁର୍ଗନ୍ଧ ଏବଂ ଭିକ୍ଷାବୃତ୍ତି । ଘୃଣାପୂର୍ଣ୍ଣ ଓ ନିନ୍ଦାସୂଚକ ଚିନ୍ତା ଦାନା ବାନ୍ଧିଲେ ନୃଶଂସତା ଓ ଦୋଷାରୋପ କରିବାର ଅଭ୍ୟାସ ମାନ ସୃଷ୍ଟି ହୁଅନ୍ତି ଯାହାର ପରିମାଣ ସ୍ୱରୂପ ହାଣକାଟ, ହଇରାଣ ହରକତ, ଜେଲ ଜୋରିମନାର ପରିସ୍ଥିତି ଉପୁଜେ । ସମସ୍ତ ପ୍ରକାର ସ୍ୱାର୍ଥପର ଚିନ୍ତା ଦାନାବାନ୍ଧିଲେ ଏପରି ସ୍ୱାର୍ଥପରତା ଜନିତ ଅଭ୍ୟାସ ମାନ ସୃଷ୍ଟି ହୁଅନ୍ତି ଯାହାର ଫଳସ୍ୱରୂପ ଯେଉଁ ପରିସ୍ଥିତି ଉପୁଜେ ତାହା, ଅଳ୍ପ ହେଉ ବା ଅଧିକ ହେଉ, ଦୁଃଖ ଦାୟକ । ଅନ୍ୟପକ୍ଷରେ, ସମସ୍ତ ପ୍ରକାର ସୁନ୍ଦର ଚିନ୍ତା ଦାନା ବାନ୍ଧିଲେ ଦୟା, ଶିଷ୍ଟତା, ଅନୁଗ୍ରହ ସୂଚକ ଅଭ୍ୟାସମାନ ରୂପ ନିଅନ୍ତି ଏବଂ ଫଳସ୍ୱରୂପ ଯେଉଁ ପରିସ୍ଥିତି ଉତ୍ପନ୍ନ କରନ୍ତି ତାହା ଦୟାପୂର୍ଣ୍ଣ, ପ୍ରଫୁଲ୍ଲ ଏବଂ ଉଜ୍ଜ୍ୱଳ ପରିସ୍ଥିତି । ସ୍ୱଚ୍ଛ ପବିତ୍ର ଚିନ୍ତା ଦାନା ବାନ୍ଧିଲେ ଆତ୍ମ ନିୟନ୍ତ୍ରଣର ଅଭ୍ୟାସ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ମନୁଷ୍ୟ ମଦ୍ୟପାନରୁ ସମ୍ପୂର୍ଣ୍ଣ ନିବୃତ୍ତ ରୁହେ । ସେହିସବୁ ଅଭ୍ୟାସର ଫଳସ୍ୱରୂପ ଯେଉଁ ପରିସ୍ଥିତି ସୃଷ୍ଟି ହୁଏ ତାହା ଶାନ୍ତି ଆନନ୍ଦ ଓ ବିଶ୍ୱାସର ବାତାବରଣ । ସାହସ, ସଂକଳ୍ପ ଆତ୍ମବିଶ୍ୱାସ ଓ ନିଷ୍ପତ୍ତି ନିର୍ଣ୍ଣାୟକ ଚିନ୍ତାମାନଙ୍କରୁ ଅନେକ ପ୍ରକାରର ଅଭ୍ୟାସ ଜାତ ହୁଅନ୍ତି ଯେଉଁ ଗୁଡ଼ିକ କଠିନ ରୂପ ନେଇ ବିଜୟ, ପ୍ରାଚୁର୍ଯ୍ୟ ଓ ସ୍ୱାଧୀନତାର ପରିସ୍ଥିତି ସୃଷ୍ଟି କରନ୍ତି । ଉଚ୍ଛ୍ୱସିତ ପ୍ରାଣବନ୍ତ ଚିନ୍ତାମାନେ ଦାନାବାନ୍ଧିଲେ ପରିଚ୍ଛନ୍ନତା ଓ କର୍ମକୁଶଳତାର ଅଭ୍ୟାସମାନ ସୃଷ୍ଟି ହୁଅନ୍ତି ଯାହାର କଠିନ ରୂପରେ ପରିପ୍ରକାଶ ହେଉଛି ଆନନ୍ଦପ୍ରଦ ପରିସ୍ଥିତି । ଭଦ୍ର, ନମ୍ର ତଥା କ୍ଷମାଶୀଳ ଚିନ୍ତା ଦାନା ବାନ୍ଧିଲେ ଭଦ୍ରୋଚିତ ଅଭ୍ୟାସ ମାନ ସୃଷ୍ଟି ହୁଅନ୍ତି ଯାହା ଫଳରେ ସୁରକ୍ଷା ଓ ସଂରକ୍ଷଣର ପରିସ୍ଥିତି ଜନ୍ମନିଏ । ପ୍ରେମ ଓ ନିସ୍ୱାର୍ଥପର ଚିନ୍ତାରୁ ଯେଉଁ ସବୁ ଅଭ୍ୟାସ ଦାନାବାନ୍ଧେ ସେଥିରୁ ମଣିଷ ଅନ୍ୟମାନଙ୍କ ପାଇଁ ନିଜକୁ ଭୁଲିଯାଏ । ସେଭଳି ଅଭ୍ୟାସ ଗୁଡ଼ିକର ପରିଣାମ ହେଉଛି ଦୃଢ଼ ନିଶ୍ଚିତ, ସ୍ଥାୟୀ, ସମୃଦ୍ଧି ପ୍ରଦାୟକ ବଳିଷ୍ଠ ବ୍ୟକ୍ତିତ୍ୱ । ଏଗୁଡ଼ିକ ହିଁ ମଣିଷର ପ୍ରକୃତ ସମ୍ପଦ ।

ଭଲ ହେଉ ଅଥବା ଖରାପ ହେଉ, ଯେ କୌଣସି ନିର୍ଦ୍ଦିଷ୍ଟ ଚିନ୍ତାଧାରାରୁ ସମପ୍ରକୃତିର ଫଳାଫଳ ଏବଂ ପରିସ୍ଥିତି ଉଦ୍ଭବ ହେବ । ମଣିଷ ସିଧାସଳଖ ତା' ପରିସ୍ଥିତିକୁ ଚୟନ କରିପାରିବ ନାହିଁ କିନ୍ତୁ ସେ ତା' ଚିନ୍ତାଧାରାକୁ ଚୟନ କରିପାରିବ । ତେଣୁ ପରୋକ୍ଷରେ ହେଲେ ମଧ୍ୟ ନିଶ୍ଚିତ ରୂପରେ ତା' ପରିସ୍ଥିତିକୁ ରୂପାୟିତ କରିପାରିବ ।

ମଣିଷର ପ୍ରତ୍ୟେକ ଦୃଢ଼ ଆନ୍ତରିକ ଚିନ୍ତାକୁ ଚରିତାର୍ଥ କରିବାରେ ପ୍ରକୃତି ସାହାଯ୍ୟ

କରିଥାଏ ଏବଂ ଭଲ ଓ ଖରାପ ଉଭୟପ୍ରକାରର ଚିନ୍ତାକୁ ତ୍ୱରିତ ଫଳ ପ୍ରଦାନ ନିମନ୍ତେ ଉପଯୁକ୍ତ ସୁଯୋଗ ଆଣି ଦେଇଥାଏ ।

ମଣିଷ ତା'ମନରୁ ସମସ୍ତ ପାପଚିନ୍ତାକୁ ଦୂରେଇ ଦେଲେ ଜଗତ ତା'ପ୍ରତି ସଦୟ ପାଲଟିଯିବ । ତା ମନର ସମସ୍ତ ଦୁର୍ବଳ ଓ ରୁଗ୍ଣ ଚିନ୍ତାଧାରାକୁ ଦୂରେଇ ଦେଲେ ଚମତ୍କାର ଘଟିଗଲା ଭଳି ସମସ୍ତ ସୁଯୋଗ ମଣିଷକୁ ସହାୟତା ପ୍ରଦାନ ନିମନ୍ତେ ଅଜାଡ଼ି ହୋଇ ପଡ଼ିବେ ଯଦ୍ୱାରା ସେ ତା'ର ଦୃଢ଼ ଚିନ୍ତାକୁ ଫଳବତୀ ହେବାର ଦେଖିପାରିବ । ଉତ୍ତମ ଚିନ୍ତାଧାରାକୁ ଉତ୍ସାହିତ କଲେ କୌଣସି ଦୁର୍ଭାଗ୍ୟ ମଣିଷକୁ ଘୃଣ୍ୟ ଅସନ୍ତୋଷ ଓ ଲଜ୍ଜା ଜନିତ ବନ୍ଧନରେ ପକାଇ ପାରିବ ନାହିଁ । ଏ ବିଶ୍ୱ ହେଉଛି ତୁମପାଇଁ ଅସୁମାରୀ ବର୍ଣ୍ଣର ବର୍ଣ୍ଣାଳୀ । ପ୍ରତିମୁହୂର୍ତ୍ତରେ ଏଥିରୁ ଉତ୍ପନ୍ନ ଭିନ୍ନ ଭିନ୍ନ ସମ୍ମିଶ୍ରଣର ବର୍ଣ୍ଣଛିଟାମାନ ହେଉଛନ୍ତି ତୁମର ଚିରନ୍ତନ ଚିନ୍ତାପ୍ରବାହର ସୁସଂହତ ଚିତ୍ରାବଳୀ ।

"ତୁମେ ଯେମିତି ଚାହିଁବ ସେମିତି ହେବ;
ବିଫଳତା ତା'ର ମିଥ୍ୟା ନୀଡ଼ ଖୋଜିନେଉ,
ଅଥବା ପରିସ୍ଥିତିର ନର୍କରେ ପଡ଼ୁ ।
ଆତ୍ମା ତାକୁ ଘୃଣାକରେ,
ଯେହେତୁ ଆତ୍ମା ହେଉଛି ମୁକ୍ତ ;

ସେ ହେଉଛି ସମୟର ପ୍ରଭୁ ।
ସ୍ଥାନକୁ ସେ ଜୟକରେ ।
ଖଳ, କପଟୀ ଭାଗ୍ୟକୁ ସେ ତ୍ରସ୍ତ କରେ,
କ୍ରୁର ପରିସ୍ଥିତିର ମୁକୁଟକୁ ଧରାଶାୟୀ କରେ,
ପରିସ୍ଥିତିକୁ ଦାସ କରିଦିଏ ।

ମଣିଷର 'ଇଚ୍ଛା', ସେ ଯେଉଁ ଅଦୃଶ୍ୟ ଶକ୍ତି
ଅମୃତ ଆତ୍ମାର ସ୍ଫୁଲିଙ୍ଗ,
କୌଣସି ବି ଲକ୍ଷ୍ୟ ପାଇଁ
ରାସ୍ତା କାଟିପାରେ
ଥାଉ ପଛେ ପଥର ପ୍ରାଚୀର ।

ବିଳମ୍ବ ହେଲା ? ଅଧୈର୍ଯ୍ୟ ହୁଅନା,
ଅପେକ୍ଷାକର, ବୁଝ । ତୁମେ ତ ଜ୍ଞାନୀ ।
ଯେତେବେଳେ ଆତ୍ମା ଜାଗି ଉଠିବ,
ଆଉ ନିର୍ଦ୍ଦେଶ ଦେବ,
ଦେବତାମାନେ ଆଦେଶ ପାଳନ ପାଇଁ
ପ୍ରସ୍ତୁତ ଥିବେ ।"

ଶରୀର ହେଉଛି ମନର ଭୃତ୍ୟ । ଏହା ମନର ନିର୍ଦ୍ଦେଶକୁ ପାଳନ କରେ । ସେ ନିର୍ଦ୍ଦେଶ ଯନ୍ନ ସହ ନିର୍ବାଚିତ ନିର୍ଦ୍ଦେଶ ହେଉ ଅଥବା ସ୍ୱତଃସ୍ଫୂର୍ତ୍ତ ହେଉ । ବେନିୟମ ଚିନ୍ତାର ପାଳନ କରିବାକୁ ଯାଇ ଶରୀର ରୋଗଗ୍ରସ୍ତ ହୋଇ ଖୁବ୍‌ଶୀଘ୍ର କ୍ଷୟପ୍ରାପ୍ତ ହୁଏ ଏବଂ ବିନାଶ ଆଡ଼କୁ ଅଗ୍ରସର ହୁଏ । ଆନନ୍ଦପ୍ରଦ ସୁନ୍ଦର ଚିନ୍ତାର ନିର୍ଦ୍ଦେଶରେ ଶରୀର ନବଯୌବନ ପ୍ରାପ୍ତ ହୋଇ ସୌନ୍ଦର୍ଯ୍ୟ ବିଭୂଷିତ ହୁଏ ।

ପରିସ୍ଥିତି ଭଳି ରୋଗ ଓ ସ୍ୱାସ୍ଥ୍ୟର ଚେର ଥାଏ ଚିନ୍ତା ମଧ୍ୟରେ । ରୁଗ୍ଣ ଚିନ୍ତାଧାରାର ପରିପ୍ରକାଶ ରୁଗ୍ଣ ଶରୀର ମାଧ୍ୟମରେ ଘଟିଥାଏ । ଭୟ ଜନିତ ଚିନ୍ତା ଗୁଳିବିଦ୍ଧ କଲାପରି ମଣିଷକୁ ଖୁବ୍‌ଶୀଘ୍ର ମାରିଦେବାର ଜଣାଅଛି । ଏହିଭଳି ଚିନ୍ତାରୁ ହଜାର ହଜାର ବ୍ୟକ୍ତି ନିରବଚ୍ଛିନ୍ନ ଭାବେ ନିଶ୍ଚିତ ମୃତ୍ୟୁର ଶିକାର ହୋଇଚାଲିଛନ୍ତି, ଯଦିଓ ମନ୍ଥର ବେଗରେ । ଯେଉଁ ଲୋକମାନେ ରୋଗ ଭୟରେ ବଞ୍ଚନ୍ତି ସେମାନେ ହିଁ ଏ ପ୍ରକାର ଫଳ ପାଆନ୍ତି । ଉଦ୍‌ବେଗ ଖୁବ୍‌ଶୀଘ୍ର ଶରୀରକୁ ଅନ୍ତଃସାରଶୂନ୍ୟ କରିଦିଏ ଯାହାଫଳରେ ସହଜରେ ରୋଗ ପଶିଯାଏ । ଶାରୀରିକ ପରିତୃପ୍ତିବିନା ମଧ୍ୟ କେବଳ ଅସତ୍‌ଚିନ୍ତା ଯୋଗୁଁ ସ୍ନାୟୁ ବ୍ୟବସ୍ଥା ଅବିଳମ୍ବେ ବିଧ୍ୱସ୍ତ ହୋଇଯାଏ ।

ଶୁଦ୍ଧ, ଆନନ୍ଦପ୍ରଦାୟକ ଦୃଢ଼ ଇଚ୍ଛା ଶରୀରକୁ ଲାଳିତ୍ୟପୂର୍ଣ୍ଣ ତଥା ଶକ୍ତିଶାଳୀ କରନ୍ତି । ଶରୀର ଏକ ନମନୀୟ ସୁକୁମାର ଯନ୍ତ୍ର । ଯେଉଁ ଚିନ୍ତା ଗୁଡ଼ିକ ଏହାକୁ ଆକୃଷ୍ଟ କରେ ସେଗୁଡ଼ିକ ଦ୍ୱାରା ଶରୀର ପ୍ରଭାବିତ ହୁଏ । ଭଲ ହେଉ ଅଥବା ମନ୍ଦ, ଚିନ୍ତାରୁ ଜାତ ଅଭ୍ୟାସ ଗୁଡ଼ିକ ଶରୀର ଉପରେ ଅନୁରୂପ ଫଳ ପ୍ରଦାନ କରନ୍ତି ।

ଦୂଷିତ ଚିନ୍ତା ପୋଷଣ କରୁଥିବା ପର୍ଯ୍ୟନ୍ତ ମଣିଷର ରକ୍ତ ଦୂଷିତ ଓ ବିଷାକ୍ତ ଥିବ । ନିର୍ମଳ ହୃଦୟରୁ ନିର୍ମଳ ଜୀବନ ଓ ନିର୍ମଳ ଶରୀର ଜାତ ହେବ । ଦୂଷିତ ମନର ଫଳ ହେଉଛି ଦୂଷିତ ଜୀବନ ଓ ଦୂଷିତ ଶରୀର । ସମସ୍ତ କର୍ମ, ଜୀବନ ଓ ଯାବତୀୟ ଘଟଣାର ମୂଳ ହେଉଛି ଚିନ୍ତା । ମୂଳ ଝରଣାକୁ ନିର୍ମଳ କରିଦେଲେ ସବୁକିଛି ନିର୍ମଳ ହୋଇଯିବ ।

ମଣିଷ ଯଦି ତା ଚିନ୍ତାଧାରାରେ ପରିବର୍ତ୍ତନ ନ କରିବ, କେବଳ ଖାଦ୍ୟରେ ପରିବର୍ତ୍ତନ କରିଦେଲେ କାମ ଚଳିବ ନାହିଁ । ଯେତେବେଳେ ମଣିଷ ତା ଚିନ୍ତାକୁ ଶୁଦ୍ଧ କରିଦେବ, ସେତେବେଳେ ଅଶୁଦ୍ଧ ଖାଦ୍ୟ ରସ ଆବଶ୍ୟକ କରିବ ନାହିଁ ।

ନିର୍ମଳ ଚିନ୍ତାରୁ ନିର୍ମଳ ଅଭ୍ୟାସମାନ ସୃଷ୍ଟି ହୁଏ । ଯେଉଁ ତଥାକଥିତ ସାଧୁ ତା ଶରୀରକୁ ଧୌତ କରେ ନାହିଁ, ସେ ପ୍ରକୃତ ସାଧୁ ନୁହେଁ । ଯେଉଁ ବ୍ୟକ୍ତି ତାହାର ଚିନ୍ତାଧାରାକୁ ଶୁଦ୍ଧ କରି ସୁଦୃଢ଼ କରିଛି, ସେ ଅନିଷ୍ଟକାରୀ ଜୀବାଣୁଙ୍କ ବିଷୟରେ ଚିନ୍ତିତ ହେବାର ଆବଶ୍ୟକତା ନାହିଁ ।

ତୁମେ ଯଦି ତୁମର ଶରୀରକୁ ତ୍ରୁଟିଶୂନ୍ୟ ରଖିବାକୁ ଚାହୁଁଛ ତେବେ ତୁମ ମନ ପ୍ରତି ଧ୍ୟାନ ଦିଅ । ଶରୀରକୁ ପୁନଃ ଶ୍ରୀ ସମ୍ପନ୍ନ କରିବାକୁ ଯଦି ଇଚ୍ଛା କରୁଛ ତେବେ ମନକୁ ସୁନ୍ଦର କର । ଈର୍ଷା, ବ୍ୟର୍ଥତା, ବିଷାଦ, ନୈରାଶ୍ୟ, ଦ୍ୱେଷ, ଶତ୍ରୁତାଆଚରଣ ପ୍ରଭୃତି ଚିନ୍ତାଧାରା ଶରୀରକୁ ଶ୍ରୀହୀନ କରିଦିଏ । ଆମ୍ବିଳା ମୁହଁଟିଏ ସହସା ସୃଷ୍ଟି ହୁଏ ନାହିଁ, ଆବିଳ ଚିନ୍ତାଯୋଗୁଁ ମୁହଁ ଆମ୍ବିଳା ଦେଖାଯାଏ । ଚିନ୍ତାଧାରା ମୁହଁରେ ପ୍ରକାଶ ପାଏ । ମୁଖମଣ୍ଡଳରେ ସୃଷ୍ଟି ହୋଇଥିବା ବିକୃତ କୁଞ୍ଚିତ ରେଖା ଗୁଡ଼ିକ ଗର୍ବ, ମୂର୍ଖତା, କ୍ରୋଧ, ଉତ୍ତେଜନା ପ୍ରଭୃତି ଚିନ୍ତା ଦ୍ୱାରା ଅଙ୍କା ଯାଇଥାଏ ।

ମୁଁ ୯୬ ବର୍ଷୀୟା ଜଣେ ମହିଳାଙ୍କୁ ଜାଣେ ଯାହାଙ୍କର ମୁଖମଣ୍ଡଳ ଜଣେ କୋମଳମତି ସରଳ ବାଳିକାର ମୁଖମଣ୍ଡଳପରି ଉଜ୍ଜ୍ୱଳ । ମୁଁ ମଧ୍ୟ ଜଣେ ମଧ୍ୟବୟସ୍କ ଅପେକ୍ଷା କମ୍ ବୟସର ପୁରୁଷଙ୍କୁ ଜାଣେ ଯାହାଙ୍କ ମୁଖମଣ୍ଡଳ ଅନେକ ବିକୃତ କୁଞ୍ଚ ରେଖା ବିଶିଷ୍ଟ । ପ୍ରଥମ କ୍ଷେତ୍ରରେ ଏହା ( ହେଉଛି ମନଭିତରର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ପରିପ୍ରକାଶ । ଅନ୍ୟ କ୍ଷେତ୍ରରେ ଏହା ଅସନ୍ତୋଷ ଓ କୁତ୍ସିତ ମାନସିକତାର ଫଳ ।

ତୁମ ପ୍ରକୋଷ୍ଠ ମଧ୍ୟକୁ ମୁକ୍ତ ବାୟୁ ଚଳାଚଳ ଓ ସୂର୍ଯ୍ୟାଲୋକର ପ୍ରବେଶ ଯଦି ହେଉ ନଥାଏ ତେବେ ସେ ଘରକୁ ଯେପରି ଉତ୍ତମ ବାସଗୃହ କୁହାଯାଇପାରିବ ନାହିଁ ସେହିପରି ମନଭିତରକୁ ଉତ୍ତମ, ଶାନ୍ତ,ପ୍ରଫୁଲ୍ଲ, ସଦିଚ୍ଛାତ୍ମକ ଚିନ୍ତାଧାରାର ଅବାଧ ପ୍ରବେଶ ହେଲେ ହିଁ ଏକ ସୁସ୍ଥ, ବଳିଷ୍ଠ, ସୁଖୀ, ଉଜ୍ଜ୍ୱଳ ପ୍ରଶାନ୍ତ ମୁଖମମଣ୍ଡଳ ଉଦ୍ଭାଷିତ ହେବ ।

ବୟସ୍କ ବ୍ୟକ୍ତିମାନଙ୍କ ମୁଖମଣ୍ଡଳରେ ଯେଉଁ କୁଞ୍ଚିତ ରେଖାମାନ ଦେଖାଯାଏ ସେଗୁଡ଼ିକରୁ କେତେକ ଦୟାପରାୟଣ ଚିନ୍ତାରୁ ସୃଷ୍ଟି ହୋଇଥିବା ବେଳେ ଅନ୍ୟ କେତେକ ଶୁଦ୍ଧ ସୁଦୃଢ଼ ଚିନ୍ତାରୁ ସୃଷ୍ଟ । ପୁଣି ଅନ୍ୟ କେତେକ କୁଞ୍ଚ କୁତ୍ସିତ ଚିନ୍ତା ଜନିତ । କିଏ ବା ଏ ସବୁର ପ୍ରଭେଦ ବାରି ନପାରେ ? ଯେଉଁମାନେ ଜୀବନକୁ ସତ୍, ମହତ ଉପାୟରେ ଜିଇଁଛନ୍ତି ସେମାନଙ୍କ ପାଇଁ ବୟସ ଧୀର ମନ୍ଥର ଗତିରେ; ସ୍ଥିର, ପ୍ରଶାନ୍ତ ଭାବରେ

ଅତିବାହିତ ହୋଇଯାଇଛି ଠିକ୍ କୋମଳ ସୂର୍ଯ୍ୟାସ୍ତ ଭଳି । ନିକଟ ଅତୀତରେ ମୁଁ ଜଣେ ଦାର୍ଶନିକଙ୍କୁ ତାଙ୍କ ମୃତ୍ୟୁଶଯ୍ୟାରେ ଦେଖିଥିଲି । ବୟସକୁ ଛାଡ଼ିଦେଲେ ଅନ୍ୟ କୌଣସି ଦୃଷ୍ଟିରୁ ସେ ବୃଦ୍ଧ ନଥିଲେ । ସେ ଯେମିତି ଭାବରେ ମଧୁର, ପ୍ରଶାନ୍ତ ଜୀବନ ବିତାଇଥିଲେ ସେମିତି ମଧୁର, ପ୍ରଶାନ୍ତ ମୃତ୍ୟୁ ଲଭିଥିଲେ ।

ଶରୀରର ବ୍ୟାଧିମାନଙ୍କୁ ଦୂରକରିବା ପାଇଁ ପ୍ରଫୁଲ୍ଲ ମନଠାରୁ ବଳି ବଡ଼ ଚିକିତ୍ସକ ନାହିଁ । ଦୁଃଖ, ବିଷାଦର କାଳିମାକୁ ପୋଛି ଦେଇ ସାନ୍ତ୍ୱନା ପ୍ରଦାନ କରିବାକୁ "ସଦିଚ୍ଛା" ସହ ଆଉ କାହାକୁ ତୁଳନା କରାଯାଇ ନପାରେ । ସବୁବେଳେ ସନ୍ଦେହ, ଈର୍ଷା, ଶତ୍ରୁତା, ନୈରାଶ୍ୟ ପ୍ରଭୃତି କଦର୍ଯ୍ୟ ଭାବନାକୁ ନେଇ ବଞ୍ଚିବାର ଅର୍ଥ ହେଉଛି ନିଜ ନିର୍ମିତ କାରାଗାର ଗହ୍ୱରରେ ନିଜକୁ ଆବଦ୍ଧ ରଖିବା । କିନ୍ତୁ ସମସ୍ତଙ୍କ ପାଇଁ ମଙ୍ଗଳ କାମନା କରିବା, ସମସ୍ତଙ୍କ ସହ ଉଲ୍ଲାସପୂର୍ଣ୍ଣ ପ୍ରଫୁଲ୍ଲ ଆଚରଣ କରିବା, ପ୍ରତ୍ୟେକଙ୍କ ଭିତରେ ଥିବା ଭଲଗୁଣକୁ ଧୈର୍ଯ୍ୟର ସହ ଖୋଜି ସେଗୁଡ଼ିକରୁ ଶିକ୍ଷା ଲାଭ କରିବା - ଏହିଭଳି ଧରଣର ନିସ୍ୱାର୍ଥପର ଚିନ୍ତାଗୁଡ଼ିକ ପ୍ରକୃତରେ ହେଉଛନ୍ତି ଦେବଲୋକକୁ ପ୍ରବେଶଦ୍ୱାର । ପ୍ରତିଦିନ ପ୍ରତି ମୂହୂର୍ତ୍ତରେ ପ୍ରତ୍ୟେକ ପ୍ରାଣୀର ମଙ୍ଗଳ କାମନା କରି ଜିଇଁବା ଦ୍ୱାରା ବ୍ୟକ୍ତିକୁ ପର୍ଯ୍ୟାପ୍ତ ପ୍ରଶାନ୍ତି ପ୍ରାପ୍ତ ହୋଇଥାଏ ।

ଯେ ପର୍ଯ୍ୟନ୍ତ ଚିନ୍ତାକୁ ଉଦ୍ଦେଶ୍ୟ ସହିତ ଯୋଡ଼ି ଦିଆ ନଯାଇଛି ସେ ପର୍ଯ୍ୟନ୍ତ ସେଥିରୁ କିଛି ବୌଦ୍ଧିକ ଲକ୍ଷ୍ୟ ପୂରଣ ହେବନ ହିଁ । ଅଧିକାଂଶ ବ୍ୟକ୍ତିଙ୍କ କ୍ଷେତ୍ରରେ ଜୀବନ ସମୁଦ୍ରରେ ଭାବନାର ନୌକା ଲକ୍ଷ୍ୟହୀନ ଭାବେ ଭାସିଯାଏ । ଲକ୍ଷ୍ୟହୀନତା ଏକ ଦୁର୍ବଳତା, ମନ୍ଦଗୁଣ । ଯେଉଁବ୍ୟକ୍ତି ବିପଦଆପଦ, ଝଡ଼ଝଞ୍ଜା, ଦୁର୍ଘଟଣାକୁ ଏଡ଼ାଇ ତା' ଲକ୍ଷ୍ୟ ସ୍ଥଳରେ ନିରାପଦରେ ପହଞ୍ଚିବାକୁ ଚାହିଁବ ତା' ପକ୍ଷରେ ଏଭଳି ଲକ୍ଷ୍ୟହୀନ ଭାବେ ଭାସିଯିବାର ତୁରନ୍ତ ଅନ୍ତ ଘଟିବା ଆବଶ୍ୟକ ।

ଯେଉଁମାନଙ୍କ ଜୀବନରେ କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନଥାଏ ସେମାନେ ସହଜରେ ଛୋଟ ଛୋଟ ବିଷୟରେ ଦୁଶ୍ଚିନ୍ତା, ଭୟ, ଆତ୍ମଅନୁଶୋଚନା, ଦୁଃଖର ଶୀକାର ହୋଇଯାଆନ୍ତି । ଏ ସବୁଗୁଡ଼ିକ ଦୁର୍ବଳତାକୁ ସୂଚାଇ ଦିଅନ୍ତି । ସୁଚିନ୍ତିତ ଉପାୟରେ କରାଯାଇଥିବା ପାପକାର୍ଯ୍ୟର ନିଶ୍ଚିତ ଫଳ ଭଳି (ଯଦିଓ ଭିନ୍ନ ପଥରେ ସେ ସବୁ କରାଯାଇଥାଏ) ଏ ସବୁର ନିଶ୍ଚିତ ଫଳ ହେଉଛି ବିଫଳତା, ଅସନ୍ତୋଷ ଏବଂ ହାନୀ, କାରଣ ଶକ୍ତି ବଳରେ ପରିଚାଳିତ ବ୍ରହ୍ମାଣ୍ଡରେ ଦୁର୍ବଳତା ତିଷ୍ଠିପାରିବ ନାହିଁ ।

ମଣିଷ ତା' ହୃଦୟରେ ଏକ ଯଥାର୍ଥ ଉଦ୍ଦେଶ୍ୟ ପୋଷଣ କରି ସେହି ଉଦ୍ଦେଶ୍ୟ ସାଧନରେ ବ୍ରତୀ ହେବା ଉଚିତ୍ । ନିଜର ଏହି ମହତ ଉଦ୍ଦେଶ୍ୟକୁ ନିଜ ଚିନ୍ତାଧାରାର

କେନ୍ଦ୍ରବିନ୍ଦୁ କରିବା ଉଚିତ୍ । ମଣିଷର ଚରିତ୍ର ଆଧାରରେ ଓ ଉପସ୍ଥିତ ସମୟ ଅନୁସାରେ ଏହା ହୁଏତ ଏକ ଆଧାତ୍ମିକ ଆଦର୍ଶ ରୂପରେ ହୋଇପାରେ ଅଥବା କୌଣସି ପାର୍ଥିବ ସାମଗ୍ରୀ ହୋଇପାରେ । ଯାହା ବି ହେଉନା କାହିଁକି, ନିଜେ ସ୍ଥିର କରିଥିବା ଲକ୍ଷ୍ୟ ଉପରେ ବ୍ୟକ୍ତିକୁ ତାହାର ସମଗ୍ର ଚିନ୍ତାଶକ୍ତିକୁ ନିରବଚ୍ଛିନ୍ନ ଭାବେ କେନ୍ଦ୍ରୀଭୂତ କରି ଇପ୍‌ସିତ ଆକାଙ୍‌କ୍ଷାର ପରିପୂରଣ ଦିଗରେ ନିଷ୍ଠାପର ଉଦ୍ୟମ ଅବ୍ୟାହତ ରଖିବାକୁ ହେବ । ସେହି ଉଦ୍ଦେଶ୍ୟକୁ ତା'ର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ଭାବେ ବିବେଚନା କରିବାକୁ ହେବ । ସେହି ଉଦ୍ଦେଶ୍ୟ ସାଧନ ପାଇଁ ନିଜକୁ ସମର୍ପିତ କରିଦେବାକୁ ହେବ । ନିଜର ଚିନ୍ତାଧାରା ଯେପରି ଲକ୍ଷ୍ୟରୁ ବିଚ୍ୟୁତ ହୋଇନଯାଏ, କ୍ଷଣିକ ବିଳାସ, ବ୍ୟସନ, ସୁଖପ୍ରତି ଆକୃଷ୍ଟ ହୋଇ ଲକ୍ଷ୍ୟଭ୍ରଷ୍ଟ ହୋଇନଯାଏ, ସେଥିପ୍ରତି ସତର୍କ ରହିବାକୁ ହେବ । ଏହା ହିଁ ହେଉଛି ଆତ୍ମ ନିୟନ୍ତ୍ରଣ ଏବଂ ସଚ୍ଚା ଏକାଗ୍ର ଚିନ୍ତନ ନିମନ୍ତେ ରାଜମାର୍ଗ । ନିଜ ଉଦ୍ଦେଶ୍ୟ ସାଧନରେ ବାରମ୍ବାର ବିଫଳ ହେଲେ ମଧ୍ୟ (ଦୁର୍ବଳତା ଗୁଡ଼ିକୁ ସମ୍ପୂର୍ଣ୍ଣ ଭାବେ ଜୟ କଲା ପର୍ଯ୍ୟନ୍ତ ଏପରି ଘଟିବା ନିଶ୍ଚିତ) ଚରିତ୍ରର ବଳିଷ୍ଠତାରେ ଯେଉଁ ବୃଦ୍ଧି ଘଟୁଥିବ ସେଗୁଡ଼ିକ ପ୍ରକୃତ ସଫଳତାର ପରିମାପକ । ବଳିଷ୍ଠ ଚରିତ୍ରର ପ୍ରତ୍ୟେକ ପଦକ୍ଷେପ ପରବର୍ତ୍ତୀ ସଫଳତା ଓ ସାମର୍ଥ୍ୟ ଆଡ଼କୁ ବାଟ କଢ଼ାଇନେବ ।

ଯେଉଁମାନେ କୌଣସି ଏକ ମହାନ ଉଦ୍ଦେଶ୍ୟ ଉପଲବ୍ଧି କରିବାକୁ ଏ ପର୍ଯ୍ୟନ୍ତ ପ୍ରସ୍ତୁତ ନୁହଁନ୍ତି ସେମାନେ ତାଙ୍କ କର୍ତ୍ତବ୍ୟ ଗୁଡ଼ିକୁ ଅଭ୍ରାନ୍ତଭାବେ ସମ୍ପାଦନ କରିବା ଦିଗରେ ନିଜ ଚିନ୍ତାଶକ୍ତିକୁ କେନ୍ଦ୍ରୀଭୂତ କରିବା ଉଚିତ୍, ତାଙ୍କ କାର୍ଯ୍ୟଗୁଡ଼ିକ ଯେତେ ନଗଣ୍ୟ ହେଉନା କାହିଁକି । କେବଳ ଏହି ଉପାୟରେ ଚିନ୍ତାଧାରା ମାନଙ୍କୁ ଏକତ୍ର କରାଯାଇ ପାରିବ ଏବଂ ସେଗୁଡ଼ିକ ଉପରେ ଧ୍ୟାନ କେନ୍ଦ୍ରୀଭୂତ କରାଯାଇପାରିବ । ସେସବୁ ସ୍ପଷ୍ଟତର ହୋଇ ଶକ୍ତିଶାଳୀ ହେବେ । ଏପରି ହୋଇଗଲେ ଆଉ କିଛି ଅସାଧ୍ୟ ରହିବ ନାହିଁ । ଉଦ୍ୟମ ଓ ଅଭ୍ୟାସ ଫଳରେ ସାମର୍ଥ୍ୟର ପରିପ୍ରକାଶ ଘଟିବ - ଏହି ସତ୍ୟ ଉପରେ ବିଶ୍ୱାସ ପୋଷଣ କଲେ ସବୁଠୁ ଦୁର୍ବଳ ମାନସିକତା ସମ୍ପନ୍ନ ବ୍ୟକ୍ତି ନିଜ ଦୁର୍ବଳତା ଗୁଡ଼ିକୁ ଜାଣିପାରି ଯଦି ତୁରନ୍ତ ସେ ସତ୍ୟକୁ ପ୍ରୟୋଗ କରିପାରିବ, ଉଦ୍ୟମ ପରେ ଉଦ୍ୟମ ଯୋଗ କରିଚାଲିବ, ଧୈର୍ଯ୍ୟ ସହ ଆହୁରି ଧୈର୍ଯ୍ୟ ଯୋଗ କରିବ, ସାମର୍ଥ୍ୟ ଉପରେ ଅଧିକ ସାମର୍ଥ୍ୟ ବିନିଯୋଗ କରିବ, ତା'ର ବିକାଶ ଆଉ ବାଧାପ୍ରାପ୍ତ ହେବନାହିଁ । ପରିଶେଷରେ ସେ ଦିବ୍ୟ ସାମର୍ଥ୍ୟ ପ୍ରାପ୍ତ ହେବ ।

ଦୁର୍ବଳ ଶରୀରର ବ୍ୟକ୍ତି ଯେପରି ଯତ୍ନଶୀଳ ପ୍ରଶିକ୍ଷଣ ଏବଂ ଧୈର୍ଯ୍ୟ ବଳରେ ନିଜକୁ ଅଧିକ ସମର୍ଥ କରିପାରେ ସେହିପରି ଦୁର୍ବଳ ମାନସିକତା ସମ୍ପନ୍ନ ବ୍ୟକ୍ତି ସତ୍‌ଚିନ୍ତା

କରିବାର ଅନୁଶୀଳନ ଗୁଡ଼ିକୁ ଯତ୍ନପୂର୍ବକ ଅଭ୍ୟାସ କରି ନିଜ ଚିନ୍ତାଧାରାକୁ ବଳିଷ୍ଠ କରିପାରିବ ।

ଲକ୍ଷ୍ୟହୀନତା ଓ ଦୁର୍ବଳତାକୁ ଦୂରେଇ ଦେଇ ଉଦ୍ଦେଶ୍ୟ ପୂର୍ଣ୍ଣ ଚିନ୍ତା କରିବାକୁ ହେଲେ ସେହି ବଳିଷ୍ଠ ବ୍ୟକ୍ତିତ୍ୱ ମାନଙ୍କ ସ୍ତରକୁ ଉନ୍ନୀତ ହେବାକୁ ହେବ ଯେଉଁମାନେ ହିଁ କେବଳ ହୃଦୟଙ୍ଗମ କରିପାରନ୍ତି ଯେ ବିଫଳତା ହେଉଛି ଲକ୍ଷସାଧନ ଦିଗରେ ମଧ୍ୟ ଏକ ପଥ; ଯେଉଁମାନେ ସବୁପ୍ରକାର ପରିସ୍ଥିତିକୁ ତାଙ୍କ କାର୍ଯ୍ୟସିଦ୍ଧି ପାଇଁ ବ୍ୟବହାର କରନ୍ତି, ଯେଉଁମାନେ ଦୃଢ଼ ଭାବରେ ଚିନ୍ତା କରନ୍ତି, ନିର୍ଭିକ ଭାବରେ କାର୍ଯ୍ୟାରମ୍ଭ କରନ୍ତି ଏବଂ ସେମାନଙ୍କ ଉଦ୍ଦେଶ୍ୟକୁ ପ୍ରଭୁ ଭାବରେ ହାସଲ କରନ୍ତି ।

ପ୍ରଥମେ ଉଦ୍ଦେଶ୍ୟଟି ବିଷୟରେ ସ୍ଥିର ନିଶ୍ଚିତ ହେବା ପରେ ଏହାକୁ ହାସଲ କରିବା ନିମନ୍ତେ ଏକ ସିଧାରାସ୍ତା ମାନସିକ ସ୍ତରରେ କଳ୍ପନା କରିବାକୁ ହେବ । ହଁ, ସିଧାରାସ୍ତା, ବାମ ଅଥବା ଦକ୍ଷିଣ ଦିଗକୁ ଚାହିଁବାକୁ ହେବନାହିଁ । ସମସ୍ତ ପ୍ରକାର ଭୟ ଓ ସନ୍ଦେହକୁ ଦୃଢ଼ ଭାବରେ ଆଡ଼େଇ ଦେବାକୁ ପଡ଼ିବ କାରଣ ଏଗୁଡ଼ିକ ହେଉଛନ୍ତି ବିଚ୍ଛିନ୍ନତା ସୃଷ୍ଟିକାରୀ ଉପାଦାନ । ଉଦ୍ୟମର ସିଧା ରାସ୍ତାକୁ ଏମାନେ ଭାଙ୍ଗି ଦିଅନ୍ତି । ସେଥିରେ ଫାଟ, ଗର୍ତ୍ତ ସବୁ ସୃଷ୍ଟି କରନ୍ତି ଏବଂ ଉଦ୍ୟମକୁ ଅକାମୀ କରିଦିଅନ୍ତି । ସନ୍ଦେହ ଓ ଭୟ ଜନିତ ଚିନ୍ତାରୁ କୌଣସି ସିଦ୍ଧି ମିଳେନାହିଁ କିମ୍ବା ମିଳିପାରିବ ନାହିଁ । ଏଗୁଡ଼ିକ ସବୁବେଳେ ବିଫଳତା ଆଡ଼କୁ ମୁହାଁଇ ଥାଆନ୍ତି । ଯେତେବେଳେ ସନ୍ଦେହ ଏବଂ ଭୟ ପ୍ରବେଶ କରନ୍ତି ସେତେବେଳେ ଉଦ୍ଦେଶ୍ୟ ସ୍ଥିର ହୋଇଯାଏ, ସାମର୍ଥ୍ୟ ସ୍ଥାଣୁ ପାଲଟି ଯାଏ, କାର୍ଯ୍ୟ କରିବାର ଶକ୍ତି ଲୋପପାଏ, ଦୃଢ଼ ସଂକଳ୍ପ ଅଟକିଯାଏ ।

"ଆମେ କରିପାରିବା" - ମଣିଷର ଏହି ଜ୍ଞାନରୁ ଦୃଢ଼ ଇଚ୍ଛାଶକ୍ତିର ସ୍ଫୁରଣ ଘଟେ । ସନ୍ଦେହ ଏବଂ ଭୟ ହେଉଛନ୍ତି ଜ୍ଞାନର ବଡ଼ ଶତ୍ରୁ । ତେଣୁ ଯେଉଁ ବ୍ୟକ୍ତି ସେ ସବୁକୁ ଉତ୍ସାହିତ କରେ, ସେ ସବୁକୁ ହତ୍ୟା କରେ ନାହିଁ, ସେ ବ୍ୟକ୍ତି ପ୍ରତ୍ୟେକ ପଦକ୍ଷେପରେ ବିଫଳ ହୁଏ ।

ଯେଉଁବ୍ୟକ୍ତି ସନ୍ଦେହ ଓ ଭୟକୁ ଜୟ କରିଛି ସେ ମଧ୍ୟ ବିଫଳତାକୁ ଜୟ କରିଛି । ତା'ର ପ୍ରତ୍ୟେକ ଚିନ୍ତା ସାମର୍ଥ୍ୟରେ ପ୍ରାଣବନ୍ତ । ସେଭଳି ବ୍ୟକ୍ତି ସମସ୍ତ ଅସୁବିଧା ଗୁଡ଼ିକୁ ସାହସର ସହିତ ସାମ୍ନାକରେ ଏବଂ ବିଜ୍ଞତା ପୂର୍ବକ ସେଭଳି ପରିସ୍ଥିତିରୁ ମୁକୁଳିଆସେ । ତା'ର ଉଦ୍ଦେଶ୍ୟ ଗୁଡ଼ିକ ଉପଯୁକ୍ତ ଋତୁରେ ରୋପଣ କରାଯାଇ ଥିବାରୁ ସେମାନେ ଯେଉଁ ଫୁଲ ଫଳ ଉତ୍ପନ୍ନ କରନ୍ତି ସେ ସବୁ ଅକାଳରେ ଝଡ଼ିପଡ଼େ ନାହିଁ ।

ଚିନ୍ତାକୁ ଭୟଶୂନ୍ୟ ଭାବରେ ଉଦ୍ଦେଶ୍ୟ ସହିତ ଯୋଡ଼ିଦିଆଗଲେ ତାହା

ସୃଜନଶକ୍ତିରେ ପରିଣତ ହୋଇଯାଏ । ଏଇ ତତ୍ତ୍ୱଟି ଯିଏ ଜାଣେ, କେବଳ ସେଞ୍ଚାଏ ଅନାବନା ଚିନ୍ତା ଓ ଗୁଡ଼ାଏ ଅସ୍ଥିର ଆବେଗ ଅପେକ୍ଷା ସେ ଅନେକ ଉଚ୍ଚତର ଓ ଅଧିକ ଶକ୍ତିଶାଳୀ ବ୍ୟକ୍ତିତ୍ୱର ଅଧିକାରୀ ହୋଇପାରେ । ଏହି ତତ୍ତ୍ୱକୁ ଯିଏ କାର୍ଯ୍ୟରେ ଲଗାଇଛି ସେ ତା' ମାନସିକ ଶକ୍ତିକୁ ବିଜ୍ଞତାର ସହ ପ୍ରୟୋଗ କରି ଅଧିକ ସଚେତନ ହୋଇପାରିଛି ।

# ସଫଳତା ପ୍ରାପ୍ତିରେ ଚିନ୍ତାର ଭୂମିକା

ମଣିଷ ଯାହା ସବୁ ହାସଲ କରିପାରେ ଅଥବା କରିନପାରେ ସେଗୁଡ଼ିକର ସିଧାସଳଖ କାରଣ ହେଉଛି ତା ନିଜର ଚିନ୍ତାଧାରା । ସୁବ୍ୟବସ୍ଥିତ ବିଶ୍ୱବ୍ରହ୍ମାଣ୍ଡରେ, ଯେଉଁଠି ସନ୍ତୁଳନର ସାମାନ୍ୟତମ ବ୍ୟତିକ୍ରମରୁ ସମ୍ପୂର୍ଣ୍ଣ ଧ୍ୱଂସ ଅନିବାର୍ଯ୍ୟ, ସେଠାରେ ବ୍ୟକ୍ତିର ଦାୟିତ୍ୱ ନିଶ୍ଚିତ ଭାବେ ନିରଙ୍କୁଶ ହେବା ଉଚିତ୍ । ବ୍ୟକ୍ତିର ଦୁର୍ବଳତା ଓ ସାମର୍ଥ୍ୟ, ଶୁଦ୍ଧତା ଓ ଆବିଳତା ହେଉଛି ତା' ନିଜର, ଅନ୍ୟ କାହାର ନୁହେଁ । ଏସବୁ ଅବସ୍ଥା ଗୁଡ଼ିକ ବ୍ୟକ୍ତି ତା ନିଜ ପାଇଁ ସୃଷ୍ଟି କରିଥାଏ, ଅନ୍ୟ କୌଣସି ବ୍ୟକ୍ତି ତା ପାଇଁ ଏହା ସୃଷ୍ଟି କରି ନଥାନ୍ତି । ସେହି କାରଣରୁ ବ୍ୟକ୍ତି ନିଜେ ହିଁ କେବଳ ସେ ସବୁର ପରିବର୍ତ୍ତନ କରିପାରିବ, ଅନ୍ୟ କେହି ତା ପରିସ୍ଥିତିକୁ ବଦଳାଇ ପାରିବ ନାହିଁ । ବ୍ୟକ୍ତିର ପରିସ୍ଥିତି ଗୁଡ଼ିକ ତା' ନିଜର, ଅନ୍ୟ କାହାର ନୁହଁନ୍ତି । ତା'ର ସୁଖ ଓ ଦୁଃଖ ତା ନିଜ ଆଭ୍ୟନ୍ତରରୁ ଉଦ୍ଭବ । ବ୍ୟକ୍ତି ଯେପରି ଚିନ୍ତାକରେ ସେପରି ହୁଏ । ଯେଉଁଭଳି ଚିନ୍ତା କରିବା ଜାରୀ ରଖେ ସେହିପ୍ରକାର ଅବସ୍ଥା ଅତିବାହିତ କରେ । ଜଣେ ବଳିଷ୍ଠ ବ୍ୟକ୍ତି ଅନ୍ୟ ଏକ ଦୁର୍ବଳ ବ୍ୟକ୍ତିକୁ ସାହଯ୍ୟ କରିପାରିବ ନାହିଁ ଯେ ପର୍ଯ୍ୟନ୍ତ ଦୁର୍ବଳ ବ୍ୟକ୍ତି ଜଣକ ସାହାଯ୍ୟ ଗ୍ରହଣ କରିବାକୁ ଅନିଚ୍ଛୁକ । ଇଚ୍ଛା ପ୍ରକାଶ କଲେ ମଧ ସେଥିପାଇଁ ଦୁର୍ବଳ ବ୍ୟକ୍ତିଟିକୁ ସାମର୍ଥ୍ୟବାନ ହେବାକୁ ପଡ଼ିବ । ଯେଉଁଭଳି ସାମର୍ଥ୍ୟ ଅନ୍ୟମାନଙ୍କ ଠାରେ ଦେଖି ତାରିଫ କରେ ସେଭଳି ସାମର୍ଥ୍ୟ ନିଜପାଇଁ ନିଜର ଉଦ୍ୟମ ବଳରେ ବିକଶିତ କରିବାକୁ ହେବ । ତା' ନିଜ ବ୍ୟତୀତ ଅନ୍ୟ କେହି ତା' ପରିସ୍ଥିତିକୁ ବଦଳାଇ ଦେଇ ପାରିବ ନାହିଁ । ସାଧାରଣତଃ ଲୋକେ ଏହିଭଳି ଭାବନ୍ତି ଏବଂ କହନ୍ତି, "ଅନେକ ଲୋକ ଦାସତ୍ୱ ମନୋବୃତ୍ତି ପୋଷଣ କରନ୍ତି କାରଣ ସେମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତି ହେଉଛି ଅତ୍ୟାଚାରୀ । ଆମେ ସେ ଅତ୍ୟାଚାରୀ ବ୍ୟକ୍ତିକୁ ଘୃଣା କରିବା ।" ତେବେ ଖୁବ୍ କମ୍ ଲୋକ ଆଉ ଗୋଟିଏ ପ୍ରକାରରେ ଚିନ୍ତା କରନ୍ତି ଏବଂ ସେଭଳି ଚିନ୍ତା କରୁଥିବା ଲୋକମାନଙ୍କ ସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଛି । ସେମାନେ ଯାହା ଚିନ୍ତା କରନ୍ତି ଏବଂ କହିଥାଆନ୍ତି ତାହା ଉପରୋକ୍ତ ମତର ବିରୁଦ୍ଧାଚରଣ କରେ । ତାହା ହେଉଛି "ଅନେକ ଲୋକ ଦାସତ୍ୱ ମନୋବୃତ୍ତି ପୋଷଣ କରୁଥିବାରୁ ଜଣେ ଏହାର

ସୁଯୋଗ ନେଇ ଅତ୍ୟାଚାରୀ ପାଲଟି ଯାଏ । ତେଣୁ ଦାସତ୍ୱ ମନୋବୃତ୍ତି ପୋଷଣ କରୁଥିବା ବ୍ୟକ୍ତିମାନେ ଘୃଣ୍ୟ ।" ପ୍ରକୃତ ସତ୍ୟ ହେଉଛି, ଅତ୍ୟାଚାରୀ ଓ ଦାସ ଉଭୟେ ଅଜ୍ଞ ପରିବେଶରେ ପରସ୍ପରର ସହଯୋଗୀ ଭାବେ କାର୍ଯ୍ୟ କରନ୍ତି । ଉଭୟେ ପରସ୍ପର ଦ୍ୱାରା ନିଷ୍ପୀଡୀତ ହେବାର ଜଣା ପଡୁଥିଲେ ମଧ୍ୟ ପ୍ରକୃତରେ ନିଜ ନିଜ ଦ୍ୱାରା ନିଷ୍ପୀଡୀତ ହେଉଛନ୍ତି । କେବଳ ହିଁ ସମ୍ପୂର୍ଣ୍ଣ ତଥା ତ୍ରୁଟିହୀନ 'ଜ୍ଞାନ' ଦ୍ୱାରା ନିଷ୍ପେଷିତ ମାନଙ୍କ ଦୁର୍ବଳତାର ଏବଂ ଅତ୍ୟାଚାରୀର କ୍ଷମତା ଅପବ୍ୟବହାରର ନିୟମମାନଙ୍କୁ ଉପଲବ୍ଧି କରାଯାଇପାରେ । ଉଭୟ ପ୍ରକାର ମାନସିକତା ଜନିତ ଦୁର୍ଦ୍ଦଶାଗୁଡ଼ିକ ସମ୍ପୂର୍ଣ୍ଣ ତ୍ରୁଟିହୀନ 'ପ୍ରେମ' ଦୃଷ୍ଟିରେ ସମାନ । ସମ୍ପୂର୍ଣ୍ଣ, ତ୍ରୁଟିହୀନ 'ସହାନୁଭୂତି' ଅତ୍ୟାଚାରୀ ଓ ନିଷ୍ପୀଡୀତ ଉଭୟଙ୍କୁ ସମାନଭାବରେ ଆଲିଙ୍ଗନ କରେ ।

ଯେଉଁବ୍ୟକ୍ତି ଦୁର୍ବଳତାକୁ ଜୟ କରିଛି ଏବଂ ସମସ୍ତ ସ୍ୱାର୍ଥପର ଭାବନାକୁ ଦୂରେଇ ଦେଇଛି ସେ ବ୍ୟକ୍ତି ଅତ୍ୟାଚାରୀ ଅଥବା ନିଷ୍ପୀଡୀତ - କୌଣସି ଗୋଷ୍ଠୀଭୁକ୍ତ ନୁହେଁ । ସେ ମୁକ୍ତ । ସେ ସ୍ୱାଧୀନ । କେବଳ ତା' ଚିନ୍ତାଧାରାକୁ ଉନ୍ନତ କରିପାରିଲେ ମଣିଷ ଜାଗିଉଠିବ, ତା'ର ଉତ୍ଥାନ ହେବ ଏବଂ ସେ ସଫଳତା ହାସଲ କରିପାରିବ । ଚିନ୍ତାଧାରାକୁ ଉନ୍ନତ କରିବାକୁ ଅନିଚ୍ଛୁକ ହେଲେ ସେ ସେହିପରି ଦୁର୍ବଳ ଅବସ୍ଥାରେ ହିଁ ରହିଥିବ, ଶୋଚନୀୟ ଅଧଃପତିତ ଅବସ୍ଥାରେ ପଡ଼ି ରହିଥିବ, ଦୁଃଖ ଯନ୍ତ୍ରଣା ଭୋଗୁଥିବ ।

ପାର୍ଥିବ ସାମଗ୍ରୀମାନଙ୍କ ସମେତ ଯେ କୌଣସି ବିଷୟ ହାସଲ କରିବା ପୂର୍ବରୁ ମଣିଷ ତା' ଚିନ୍ତାଧାରାକୁ ପଶୁପ୍ରବୃତ୍ତି ଓ ପାଶବିକ ପରିତୃପ୍ତିର ଉର୍ଦ୍ଧ୍ୱକୁ ନିଶ୍ଚିତ ଭାବେ ଉନ୍ନୀତ କରିବାକୁ ହେବ । ସଫଳକାମ ହେବା ପାଇଁ ସେ ହୁଏତ ସମସ୍ତ ପଶୁପ୍ରବୃତ୍ତି ଓ ସ୍ୱାର୍ଥପରତାକୁ ତ୍ୟାଗ କରିନପାରେ, କିନ୍ତୁ ଅନ୍ତତଃ ପକ୍ଷେ ସେସବୁର କିଛି ଅଂଶକୁ ନିଶ୍ଚିତ ଭାବେ ତ୍ୟାଗ କରିବାକୁ ପଡ଼ିବ । ଯେଉଁ ବ୍ୟକ୍ତିର ପ୍ରଥମ ଚିନ୍ତା ହେଉଛି ପାଶବିକ ଉପଭୋଗର ଚିନ୍ତା, ସେଭଳି ବ୍ୟକ୍ତି କଦାପି ସ୍ପଷ୍ଟରୂପେ ଚିନ୍ତା କରିପାରିବ ନାହିଁ ଅଥବା ସୃଙ୍ଖଳ ଭାବେ କୌଣସି ଯୋଜନା କରିପାରିବ ନାହିଁ । ସେଭଳି ବ୍ୟକ୍ତି କେବେହେଲେ ନିଜର ସୁପ୍ତ ପ୍ରତିଭାକୁ ଚିହ୍ନିପାରିବ ନାହିଁ କିମ୍ବା ବିକଶିତ କରିପାରିବ ନାହିଁ । ତାର ସମସ୍ତ ଉଦ୍ୟମରେ ବିଫଳ ହେଉଥିବ । ନିଜ ଚିନ୍ତାଧାରାକୁ ଦୃଢ଼ତାର ସହ ନିୟନ୍ତ୍ରଣ କରିବାକୁ ଆରମ୍ଭ ନ କରିଥିବାରୁ ଘଟଣାବଳୀକୁ ନିୟନ୍ତ୍ରଣ କରିବା ଏବଂ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ବହନ କରିବା ସ୍ଥିତିରେ ସେ ଉପନୀତ ହୋଇନାହିଁ । ସ୍ୱାଧୀନଭାବେ କାର୍ଯ୍ୟ କରିବାକୁ ଏବଂ ନିଜ ଗୋଡ଼ରେ ନିଜେ ଠିଆ ହେବାକୁ ସେ ଉପଯୁକ୍ତ ନୁହେଁ । କିନ୍ତୁ ସେ ନିଜେ ବାଛି ନେଇଥିବା ଚିନ୍ତାଧାରାର ପ୍ରଭାବରେ ନିଜର ବ୍ୟକ୍ତିତ୍ୱକୁ ସୀମିତ କରିଦେଇଛି ମାତ୍ର ।

ତ୍ୟାଗ ବିନା କୌଣସି ପ୍ରଗତି ଅଥବା ଅନ୍ୟକିଛି ହାସଲ କରାଯାଇ ନପାରେ । ଯେଉଁ ଅନୁପାତରେ ମଣିଷ ତା'ର ଅବ୍ୟବସ୍ଥିତ, ଗୋଳମାଳିଆ ପାଶବିକ ଚିନ୍ତାଧାରାକୁ ତ୍ୟାଗକରି ନିଜ ଯୋଜନାକୁ ଫଳପ୍ରସୂ କରିବା ନିମିତ୍ତ ତା ମନକୁ କେନ୍ଦ୍ରିଭୂତ କରାଏ ସେହି ଅନୁପାତରେ ସେ ପାର୍ଥିବ ସଫଳତା ପ୍ରାପ୍ତ ହୁଏ । ତ୍ୟାଗ ଅନୁପାତରେ ଆତ୍ମ ନିର୍ଭରଶୀଳତାରେ ବୃଦ୍ଧି ଘଟେ ଏବଂ ସେହି ଅନୁପାତରେ ତା'ର ସଂକଳ୍ପ ଶକ୍ତିଶାଳୀ ହୁଏ । ମଣିଷ ତା' ଚିନ୍ତାଧାରାକୁ ଯେତେ ଉର୍ଦ୍ଧ୍ୱକୁ ଉନ୍ନୀତ କରିବ, ଯେତେ ଅଧିକ ଦୃଢ଼, ନିଶ୍ଚିତ ଏବଂ ମହତ ଆଚରଣ କରିବ; ଯେତେ ଅଧିକ ସଚ୍ଚୋଟ ହେବ, ତା'ର ସଫଳତାର ମାତ୍ରା ସେତେ ଅଧିକ ହେବ । ଯାହାସବୁ ସେ ହାସଲ କରିବ ସେ ସବୁ ଅଧିକ ପବିତ୍ର ହେବ, ଅଧିକ ସ୍ଥାୟୀ ହେବ ।

ଲୋଭୀ, ଅସାଧୁ, ଖଳ ପ୍ରକୃତିକୁ ଏ ବିଶ୍ୱବ୍ରହ୍ମାଣ୍ଡ ସମର୍ଥନ କରେନାହିଁ । ଯଦିଓ କେବେ କେବେ ଉପରଠାଉରିଆ ଭାବେ ଏଭଳି ହେଉଥିବାର ଜଣାଯାଏ ପ୍ରକୃତରେ ବ୍ରହ୍ମାଣ୍ଡ ସଚ୍ଚୋଟ ବ୍ୟକ୍ତିର ସହାୟତା କରେ; ନ୍ୟାୟ ପରାୟଣ, ଉଦାର, ମହାନୁଭବ, ସଦ୍‌ଗୁଣ ସମ୍ପନ୍ନ ବ୍ୟକ୍ତିର ସହାୟତା କରେ । ସବୁ ଯୁଗର ମହାନ ଜ୍ଞାନୀଜନମାନେ ଏହି କଥାକୁ ଭିନ୍ନ ଭିନ୍ନ ଶବ୍ଦରେ ଘୋଷଣା କରିଛନ୍ତି । ଏହାର ତାତ୍ପର୍ଯ୍ୟ ବୁଝିବାକୁ ହେଲେ ଏବଂ ଏହାର ପ୍ରମାଣ ପାଇବାକୁ ହେଲେ ମଣିଷ କେବଳ ନିଜର ଚିନ୍ତା ପ୍ରବାହକୁ ଉନ୍ନୀତ କରି ନିଜକୁ ଅଧିକରୁ ଅଧିକ ସଦ୍‌ଗୁଣ ସମ୍ପନ୍ନ କରିବା ଦିଗରେ ଅବିରତ ପ୍ରୟାସ ଜାରୀ ରଖିବାକୁ ହେବ ।

ବୌଦ୍ଧିକ ସିଦ୍ଧି ହେଉଛି ଜ୍ଞାନ, ସୌନ୍ଦର୍ଯ୍ୟ ଏବଂ ସତ୍ୟର ସନ୍ଧାନରେ ଚିନ୍ତା ଶକ୍ତିକୁ ନିଷ୍ଠାର ସହ ଉତ୍ସର୍ଗ କରିବାର ଫଳ ଅଥବା ପ୍ରକୃତିରେ ଓ ଜୀବନରେ ଥିବା ସତ୍ୟ ଓ ସୌନ୍ଦର୍ଯ୍ୟର ଅନୁସନ୍ଧାନ କରିବାର ଫଳାଫଳ । ଏ ପ୍ରକାର ସିଦ୍ଧିର କେବେକେବେ ହୁଏତ ଉଚ୍ଚାକାଂକ୍ଷା ଓ ଅହଂଭାବ ସହ ସଂଯୋଗ ଥାଇପାରେ କିନ୍ତୁ ବୌଦ୍ଧିକ ସିଦ୍ଧି ଏହିପ୍ରକାର ଗୁଣାବଳୀର ଫଳାଫଳ ନୁହେଁ । ନିରନ୍ତର ସଙ୍କ, ନିସ୍ୱାର୍ଥପର ଚିନ୍ତାଜନିତ ଶ୍ରଦ୍ଧା ଓ ଅଧ୍ୟବସାୟର ସ୍ୱାଭାବିକ ଉଦ୍‌ବୃଦ୍ଧି ହିଁ ବୌଦ୍ଧିକ ସିଦ୍ଧି ।

ଆଧ୍ୟାତ୍ମିକ ସିଦ୍ଧି ହେଉଛି ପବିତ୍ର ଉଚ୍ଚାକାଂକ୍ଷା ମାନଙ୍କର ପରିପୂର୍ଣ୍ଣତା । ଯେଉଁ ବ୍ୟକ୍ତି ନିରନ୍ତର ଉତ୍ତୁଙ୍ଗ ମହତ୍ ଚିନ୍ତା ପୋଷଣ କରେ, ଯେଉଁ ବ୍ୟକ୍ତି ନିର୍ମଳ, ନିଃସ୍ୱାର୍ଥପର ଜୀବନ ଯାପନ କରେ, ସେ ନିଶ୍ଚିତଭାବେ ଦିବ୍ୟତ୍ୱର ଶିଖରକୁ ସ୍ପର୍ଶ କରିବ । ଏହା ଧ୍ରୁବସତ୍ୟ । ସେଭଳି ବ୍ୟକ୍ତିର ଚରିତ୍ର ମହତ ଏବଂ ସେ ହିଁ ଜ୍ଞାନୀ । ସେହିଭଳି ବ୍ୟକ୍ତି ହିଁ ପ୍ରକୃତରେ ଭାଗ୍ୟବାନ ସ୍ତରକୁ ପହଞ୍ଚ ପାରିବ ଓ ଅନ୍ୟମାନଙ୍କୁ ପ୍ରଭାବିତ କରିପାରିବ ।

ସିଦ୍ଧି ଯେକୌଣସି ପ୍ରକାରର ହେଉ ନା କାହିଁକି, ଏହା ହେଉଛି ଉଦ୍ୟମର ଶୀର୍ଷସୀମା, ଚିନ୍ତାର ରାଜମୁକୁଟ । ଆତ୍ମନିୟନ୍ତ୍ରଣ, ସଂକଳ୍ପ, ସଚ୍ଚତା, ସଦାଚାର ଏବଂ ଚିନ୍ତାଧାରାର ସୁନିୟନ୍ତ୍ରଣ ସାହାଯ୍ୟରେ ବ୍ୟକ୍ତି ଊର୍ଦ୍ଧ୍ୱକୁ ଉଠେ । ଭ୍ରଷ୍ଟତା, ପଶୁ ପ୍ରବୃତ୍ତି, ଆଳସ୍ୟ, ଅସ୍ୱଚ୍ଛ ଚିନ୍ତା ସାହାଯ୍ୟରେ ବ୍ୟକ୍ତିର ଅଧୋପତନ ଘଟେ ।

ଇହଜଗତରେ ମଣିଷ ସଫଳତାର ଶୀର୍ଷକୁ ଉଠିପାରେ ଏବଂ ଆଧ୍ୟାତ୍ମ ଜଗତରେ ମଧ୍ୟ ଉଚ୍ଚାସନ ପ୍ରାପ୍ତ ହୋଇପାରେ କିନ୍ତୁ ପୁଣି ଯଦି ସେ କୁତ୍ସିତ ସ୍ୱାର୍ଥପର ଚିନ୍ତା ଓ ଔଦ୍ଧତ୍ୟକୁ ପ୍ରଶ୍ରୟ ଦିଏ ତେବେ ଘୃଣ୍ୟ ଦୁର୍ବଳତା ହେତୁ ହୁଏତ ତା'ର ପୁଣି ଅଧୋପତନ ଘଟିପାରେ ।

ସତ୍‌ଚିନ୍ତାଦ୍ୱାରା ପ୍ରାପ୍ତ ବିଜୟକୁ କେବଳ ସତର୍କ ରହିବା ଦ୍ୱାରା ହିଁ ଦୀର୍ଘସ୍ଥାୟୀ କରାଯାଇପାରିବ । ବିଜୟର ସମ୍ଭାବନାରେ ହିଁ ଅନେକ ଲୋକ ଉଦ୍ୟମ ତ୍ୟାଗ କରିଦିଅନ୍ତି ଫଳରେ ଅବିଳମ୍ବେ ବିଫଳତା ପ୍ରାପ୍ତ ହୁଅନ୍ତି ।

ବ୍ୟବସାୟରେ ହେଉ, ବୌଦ୍ଧିକ ଅଥବା ଆଧ୍ୟାତ୍ମିକ ଜଗତର ସିଦ୍ଧି ହେଉ, ସମସ୍ତ ପ୍ରକାରର ସିଦ୍ଧି ହେଉଛି ନିର୍ଦ୍ଦିଷ୍ଟ ଭାବେ ପ୍ରକ୍ଷେପିତ ଚିନ୍ତାଧାରାର ଫଳ । ସେଗୁଡ଼ିକ ଏକାପ୍ରକାରର ନିୟମ ଅନ୍ତର୍ଭୁକ୍ତ ଏବଂ ଏକା ପ୍ରକାର ପଦ୍ଧତି ଅନୁସରଣ କରନ୍ତି । କେବଳ ପ୍ରାପ୍ତିର ବିଷୟରେ ଯାହା ଫରକ ।

ଯିଏ ଟିକିଏ କିଛି ହାସଲ କରିବ ତାକୁ ମଧ୍ୟ କିଛି ଟିକିଏ ତ୍ୟାଗ କରିବାକୁ ହେବ । ଯିଏ ଅନେକ କିଛି ହାସଲ କରିବ ତାକୁ ଅନେକ କିଛି ତ୍ୟାଗ କରିବାକୁ ହେବ । ଯିଏ ଅତ୍ୟୁଚ୍ଚ ସିଦ୍ଧି ଲାଭ କରିବ ସେ ମଧ୍ୟ ଯଥେଷ୍ଟ ତ୍ୟାଗ କରିବ ।

## କଳ୍ପନା ଓ ଆଦର୍ଶ ଦୃଷ୍ଟିଭଙ୍ଗୀ

ସ୍ୱପ୍ନ ଦେଖୁଥିବା ଲୋକମାନେ ହେଉଛନ୍ତି ଜଗତର ତ୍ରାଣକର୍ତ୍ତା । ଏ ଦୃଶ୍ୟମାନ ଜଗତ ଅଦୃଶ୍ୟ ଜଗତ ସହାୟତାରେ ତିଷ୍ଠି ରହିଛି । ତେଣୁ ମନୁଷ୍ୟଗଣ ସେମାନଙ୍କର ସମସ୍ତ ହୀନ ପ୍ରୟାସ ଓ ପାପାଚାର ସତ୍ତ୍ୱେ ସ୍ୱଳ୍ପସଂଖ୍ୟକ ସ୍ୱପ୍ନଦ୍ରଷ୍ଟାଙ୍କ ସୁନ୍ଦର କଳ୍ପନା ଯୋଗୁଁ ତିଷ୍ଠି ରହିଛନ୍ତି । ମାନବସମାଜ କଦାପି ଏହାର ସ୍ୱପ୍ନଦ୍ରଷ୍ଟାମାନଙ୍କୁ ଭୁଲିପାରିବ ନାହିଁ, ସେମାନଙ୍କର ଆଦର୍ଶକୁ ମଉଳିଯିବାକୁ ଅଥବା ମରିଯିବାକୁ ଦେବନାହିଁ । କାରଣ ମଣିଷ ସେଗୁଡ଼ିକ ଭିତରେ ବଞ୍ଚେ । ସେହିସବୁ ଆଦର୍ଶ ଯେ ବାସ୍ତବତା, ଏକଥା ମଣିଷ ଜାଣେ ଏବଂ ସେ ବାସ୍ତବତାକୁ ଦିନେ ଦେଖିବା, ଜାଣିବା ଏବଂ ଉପଲବ୍ଧି କରିବାର ଆଶା ରଖେ ।

ଗୀତିକାର, କବି, ସ୍ଥପତି, ଚିତ୍ରକାର, ଶିଳ୍ପୀ, ସାଧୁ, ସନ୍ଥ ଏ ସମସ୍ତେ ପରଜଗତର ନିର୍ମାଣକର୍ତ୍ତା, ସ୍ୱର୍ଗରାଜ୍ୟର ସ୍ଥପତି । ସେମାନେ ଦିନେ ଯେ ବଞ୍ଚିଥିଲେ ସେହି କାରଣରୁ ଏ ଜଗତ ଆଜି ସୁନ୍ଦର । ସେମାନଙ୍କ ବିନା ପରିଶ୍ରମୀ ମଣିଷଜାତି ବିନାଶପ୍ରାପ୍ତ ହୁଅନ୍ତା ।

ଯେଉଁ ବ୍ୟକ୍ତି ଖୁବ୍ ସୁନ୍ଦର କଳ୍ପନାରେ ବିଭୋର, ଯାହା ହୃଦୟ ମହାନ ଆଦର୍ଶରେ ଭରା, ଦିନେନାଦିନେ ସେ ସେଗୁଡ଼ିକୁ ପ୍ରାପ୍ତ ହେବ । କଲମ୍ବସ ଅନ୍ୟ ଏକ ପୃଥିବୀର ସ୍ୱପ୍ନ ଦେଖିଥିଲେ ଏବଂ ଦିନେ ତାହା ଆବିଷ୍କାର କରିଥିଲେ । କୁପରନିକସ ତାଙ୍କ କଳ୍ପନାଚକ୍ଷୁରେ ଅନନ୍ତ ବିଶ୍ୱବ୍ରହ୍ମାଣ୍ଡ ଓ ଅସୁମାରୀ ମହାଜାଗତିକ ପିଣ୍ଡମାନଙ୍କର ଦୃଶ୍ୟ/ସ୍ୱପ୍ନ ଦେଖିଥିଲେ ଏବଂ ସେହି ସତ୍ୟକୁ ଉନ୍ମୋଚନ କରିଥିଲେ । ନିଷ୍କଳଙ୍କ ସୌନ୍ଦର୍ଯ୍ୟ ଏବଂ ବିମଳ ଆନନ୍ଦମୟ ଯେଉଁ ବିଶ୍ୱର ସ୍ୱପ୍ନ ଗୌତମବୁଦ୍ଧ ଦେଖିଥିଲେ ତହିଁ ମଧ୍ୟକୁ ପ୍ରବେଶ କରିପାରିଥିଲେ ।

ସ୍ୱପ୍ନ ଦେଖ, ନିଜର ଆଦର୍ଶ ବାଛି ନିଅ, ଯେଉଁ ସଙ୍ଗୀତ ତୁମ ହୃଦୟକୁ ଆଲୋଡିତ କରେ ସେହି ସଙ୍ଗୀତ ପାଇଁ ଆଶା ପୋଷଣ କର; ତୁମ ମନ ଭିତରେ ସୃଷ୍ଟି ହେଉଥିବା ସୌନ୍ଦର୍ଯ୍ୟ, ଯେଉଁ ସୌନ୍ଦର୍ଯ୍ୟର ଆବରଣରେ ତୁମ ନିର୍ମଳ କଳ୍ପନା ଗୁଡ଼ିକ ଆଚ୍ଛାଦିତ, ସେ ସୌନ୍ଦର୍ଯ୍ୟ ପ୍ରାପ୍ତି ପାଇଁ ମନରେ ଆଶା ପୋଷଣ କର । କାରଣ ଏହି ଗୁଡ଼ିକ ଭିତରୁ ହିଁ ସମସ୍ତ ଆହ୍ଲାଦିତ ଅବସ୍ଥା ଓ ସ୍ୱର୍ଗୀୟ ପରିବେଶ ଜନ୍ମନେବେ । ହଁ, ତୁମେ ଯଦି ସେଗୁଡ଼ିକ ପ୍ରତି ସତ୍ୟନିଷ୍ଠ ରହିବ ପରିଶେଷରେ ତୁମ ପରିକଳ୍ପିତ ପୃଥିବୀ ନିର୍ମିତ ହେବ ।

ଅଭିଳାଷ ପୋଷଣ କରିବା ଅର୍ଥ ପ୍ରାପ୍ତ ହେବା । ଉଚ୍ଚାଭିଳାଷ ପୋଷଣ କରିବା ଅର୍ଥ ହାସଲ କରିବା, ସିଦ୍ଧି ପ୍ରାପ୍ତ ହେବା । ମଣିଷର ପଶୁପ୍ରବୃତ୍ତି ଯୋଗୁଁ ସେ କ'ଣ ପୂର୍ଣ୍ଣ ସନ୍ତୋଷ ପ୍ରାପ୍ତ ହେବ ? ତା'ର ସ୍ୱଚ୍ଛତମ ଅଭିଳାଷ କ'ଣ ପରିପୁଷ୍ଟ ନ ହୋଇ ମୃତ୍ୟୁ ଲଭିବ ? ନିୟମ ଏପରି ନୁହେଁ । ବସ୍ତୁର ଏତାଦୃଶ ଅବସ୍ଥା କସ୍ମିନକାଳେ ହୋଇ ନପାରେ । "ଅଭିଳାଷ ବ୍ୟକ୍ତକର ଏବଂ ପ୍ରାପ୍ତ ହୁଅ ।" "ମାଗିଲେ ପାଇବ ।"

ଉଚ୍ଚାଭିଳାଷର ଉତ୍ତୁଙ୍ଗ ସ୍ୱପ୍ନ ଦେଖ । ଯେମିତି ସ୍ୱପ୍ନ ଦେଖିବ ସେହିଭଳି ବ୍ୟକ୍ତିତ୍ୱର ଅଧିକାରୀ ହେବ । ଦିନେ ତୁମେ ଯେପରି ହେବ ତାହାର ପ୍ରତିଶ୍ରୁତି ତୁମର ସ୍ୱପ୍ନ ବହନ କରେ । ପରିଶେଷରେ ତୁମେ କ'ଣ ଉନ୍ମୋଚନ କରିବ ସେ ସବୁର ଭବିଷ୍ୟବାଣୀ ତୁମ ଆଦର୍ଶରେ ଅନ୍ତର୍ନିହିତ ।

ସର୍ବୋତ୍ତମ ସିଦ୍ଧି ପ୍ରଥମାବସ୍ଥାରେ ଓ କିଛିଦିନ ପର୍ଯ୍ୟନ୍ତ ସ୍ୱପ୍ନ ରୂପରେ ଥାଏ । ମହାଦ୍ରୁମଟି କ୍ଷୁଦ୍ରବୀଜ ମଧ୍ୟରେ ସୁପ୍ତ ଥାଏ । ପକ୍ଷୀଟି ଡିମ୍ବ ମଧ୍ୟରେ ଅପେକ୍ଷା କରିଥାଏ । ଆତ୍ମାର ସର୍ବୋଚ୍ଚ ସ୍ୱପ୍ନ ଭିତରେ ଜାଗ୍ରତ ପରୀଟିଏ ତେଙ୍ଗ ବୁଲୁଥାଏ । ସ୍ୱପ୍ନ ଗୁଡ଼ିକ

ବାସ୍ତବତାର ଅଙ୍କୁର ।

ତୁମର ପରିସ୍ଥିତି ଗୁଡ଼ିକ ଅନୁକୂଳ ନ ହୋଇପାରିଥାଏ । କିନ୍ତୁ ତୁମେ ଏକ ଆଦର୍ଶ ସ୍ଥିର କରିନେଇ ସେହି ଆଦର୍ଶକୁ ସାକାର କରିବାରେ ବ୍ରତୀ ରହିଲେ ପ୍ରତିକୂଳ ପରିସ୍ଥିତି ଦୀର୍ଘସ୍ଥାୟୀ ହୋଇ ରହିବ ନାହିଁ । ଆତ୍ମାର ଆଭ୍ୟନ୍ତରରେ ବିଚରଣ କରିବା ଅବସ୍ଥାରେ ବାହ୍ୟଜଗତରେ ନିଶ୍ଚଳଭାବେ ଠିଆ ହୋଇରହିବା ଅସମ୍ଭବ । ଇଏ ହେଉଛନ୍ତି ଜଣେ ତରୁଣ ଯିଏ ଦାରିଦ୍ର୍ୟ ଓ ପରିଶ୍ରମ ଯୋଗୁଁ ନିଷ୍ପେଷିତ, ଅସ୍ୱାସ୍ଥ୍ୟକର କାରଖାନା ଭିତରେ ଦୀର୍ଘସମୟ ବିତାନ୍ତି । ୟାଙ୍କର ଶିକ୍ଷାଦୀକ୍ଷା ନାହିଁ, ନିପୁଣତାର ସମସ୍ତ କଳାକୌଶଳ ବିଷୟରେ ସେ ଅଜ୍ଞ । କିନ୍ତୁ ଅଧିକ ଉତ୍ତମ ଦ୍ରବ୍ୟମାନଙ୍କ ବିଷୟରେ ସେ ସ୍ୱପ୍ନ ଦେଖନ୍ତି, ବୌଦ୍ଧିକ ପରାକାଷ୍ଠା ସମ୍ବନ୍ଧରେ ଚିନ୍ତା କରନ୍ତି; ଉତ୍କର୍ଷ, ସୌନ୍ଦର୍ଯ୍ୟ ତଥା ଲାଳିତ୍ୟ ବିଷୟରେ ଭାବନ୍ତି । ଜୀବନର ଏକ ଆଦର୍ଶ ଅବସ୍ଥା ବିଷୟରେ କଳ୍ପନା କରି ମାନସିକ ସ୍ତରରେ ସେ କଳ୍ପନାକୁ ରୂପ ଦିଅନ୍ତି । ପରିବ୍ୟାପ୍ତ ସ୍ୱାଧୀନତାର ପ୍ରଶସ୍ତ ପରିସର ତାଙ୍କ କଳ୍ପନାକୁ ଆଚ୍ଛାଦିତ କରେ । ଅତିଶୟ ଆଗ୍ରହ ଜନିତ ବ୍ୟସ୍ତତାରୁ ସେ କାମରେ ଲାଗିପଡ଼ନ୍ତି । ନିଜର ସମସ୍ତ ବଳକା ସମୟ ଓ ସାଧନକୁ ସେ ସେଦିଗରେ ଲଗାଇ ଦିଅନ୍ତି । ଏ ସମସ୍ତ ସ୍ୱଳ୍ପ, ସୀମିତ ହୋଇଥିଲେ ହେଁ ନିଜର ଅନ୍ତର୍ନିହିତ ସାମର୍ଥ୍ୟ ଓ ସାଧନର ବିକାଶ ଦିଗରେ ସେସବୁକୁ ନିୟୋଜିତ କରିଦିଅନ୍ତି । ଯଥାଶୀଘ୍ର ଏହାଙ୍କ ମାନସିକ ଅବସ୍ଥା ଏପରି ଭାବେ ପରିବର୍ତ୍ତିତ ହୁଏ ଯଦ୍ୱାରା ସେ କାମ କରୁଥିବା କାରଖାନାଟି ଆଉ ଅଧିକ ସମୟ ତାଙ୍କୁ ଧରି ରଖିପାରେ ନାହିଁ । କାରଖାନାରେ କାମ କରିବାର ମାନସିକତା ଆଉ ନଥିଲା । ତାଙ୍କ ପରିବର୍ଦ୍ଧିତ ସାମର୍ଥ୍ୟର ପରିସର ସହ ଖାପ ଖାଉଥିବା ପରିବ୍ୟାପ୍ତ ସୁଯୋଗ ମାନଙ୍କ ଅନ୍ୱେଷଣରେ ପୁରୁଣା ପୋଷାକ ବଦଳାଇବା ପରି ସେ ତାଙ୍କର କର୍ମକ୍ଷେତ୍ର ସେହି କାରଖାନାଟିକୁ ଚିରଦିନ ପାଇଁ ପରିତ୍ୟାଗ କଲେ । ଅନେକ ବର୍ଷ ପରେ ଆମେ ସେହି ତରୁଣଙ୍କୁ ଏକ ସଂପୂର୍ଣ୍ଣ ବିକଶିତ ବ୍ୟକ୍ତି ରୂପେ ଦେଖିବାକୁ ପାଉ । ଏବେ ସେ ଏପରି କେତେକ ମାନସିକ ଶକ୍ତିର ଅଧିକାରୀ ଯ ଦ୍ୱାରା ସେ ବିଶ୍ୱପ୍ରସିଦ୍ଧି ଲାଭ କରିଛନ୍ତି । ସମଗ୍ର ବିଶ୍ୱରେ ତାଙ୍କ ସମକକ୍ଷ କେହି ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ସେ ତାଙ୍କ ମୁଷ୍ଟିରେ ବିରାଟ ଦାୟୀତ୍ୱର ରଜ୍ଜୁ ବହନ କରିଛନ୍ତି । ତାଙ୍କ ମୁହଁ ଖୋଲିଲେ ଜୀବନ ପରିବର୍ତ୍ତିତ ହୋଇଯାଉଛି । ନରନାରୀଗଣ ତାଙ୍କ ବାଣୀ ଶ୍ରବଣ କରିବାକୁ ପାଗଳପ୍ରାୟ, ସେ ସବୁ ଶୁଣି ଲୋକେ ନିଜ ନିଜ ଚରିତ୍ରକୁ ନୂଆ ଛାଞ୍ଚରେ ପକାଇ ପାରୁଛନ୍ତି । ସୂର୍ଯ୍ୟଙ୍କ ଭଳି ସେ ସ୍ଥିର କେନ୍ଦ୍ରସ୍ଥଳରେ ରହି ଜାଜ୍ଜ୍ୱଲ୍ୟମାନ ଜ୍ୟୋତି ବିକିରଣ କରୁଛନ୍ତି ଯାହା ଚାରିପଟେ ଅଗଣିତ ମଣିଷଙ୍କ ଭାଗ୍ୟ ପରିକ୍ରମା କରୁଛି । ସେ ବ୍ୟକ୍ତି ଯୌବନରେ

ଦେଖିଥିବା ସପ୍ନକୁ ସାକାର କରିଛନ୍ତି । ସେ ଏବେ ତାଙ୍କ ଆଦର୍ଶ ସହ ଏକାକାର ହୋଇଯାଇଛନ୍ତି ।

ହେ ତରୁଣ ପାଠକ, ତୁମେ ମଧ୍ୟ ତୁମ ହୃଦୟର ସପ୍ନ (ଆଳସ୍ୟ ପରାୟଣ କାମନା ନୁହେଁ)କୁ ହୃଦୟଙ୍ଗମ କରିପାରିବ, ସେଗୁଡ଼ିକ ନିକୃଷ୍ଟ ଅଥବା ସୁନ୍ଦର ହେଉ ଅଥବା ଉଭୟର ସମିଶ୍ରଣ ହେଉ ପଛକେ । କାରଣ ପ୍ରଚ୍ଛନ୍ନ ଭାବରେ ଯେଉଁଥି ପ୍ରତି ତୁମେ ସର୍ବାଧିକ ଶ୍ରଦ୍ଧା ପୋଷଣ କର ସେ ଦିଗରେ ତୁମେ ସର୍ବଦା ଆକର୍ଷିତ ହେବ । ତୁମେ ଯେଉଁଭଳି ଭାବନା ପୋଷଣ କର ଠିକ୍ ତଦନୁରୂପ ଫଳ ତୁମ ହାତକୁ ଆସିବ । ଯାହା ତୁମର ହକ୍ ପ୍ରାପ୍ୟ ତାହା ତୁମେ ନିଶ୍ଚୟ ପାଇବ, କିଛି କମ୍ ନୁହେଁ କି ଅଧିକ ନୁହେଁ । ତୁମର ବର୍ତ୍ତମାନର ପରିସ୍ଥିତି ଯାହା ହୋଇଥାଉନା କାହିଁକି, ତୁମ ଚିନ୍ତାଧାରା ଅନୁସାରେ, ସପ୍ନ ଅନୁସାରେ, ଆଦର୍ଶ ଅନୁସାରେ ତୁମର ଅଧିକ ପତନ ଘଟିପାରେ; ସେହିଭଳି ସ୍ଥିତିରେ ତୁମେ ପଡ଼ି ରହିପାର ଅଥବା ତୁମେ ଉର୍ଦ୍ଧ୍ୱକୁ ଉଠିପାର । ତୁମେ ତୁମକୁ ନିୟନ୍ତ୍ରଣ କରୁଥିବା ଅଭିଳାଷ ପରି କ୍ଷୁଦ୍ର ହୋଇପାରିବ ଅଥବା ତୁମର ବଳିଷ୍ଠ ଉଚ୍ଚାଭିଳାଷ ଭଳି ମହାନ ହୋଇପାରିବ । ଷ୍ଟାଣ୍ଟନ କିରଖାମ୍ ଡାଭିସ୍‌ଙ୍କ ଚମତ୍କାର ଉକ୍ତି ଅନୁଯାୟୀ "ତୁମେ ହୁଏତ ଏହାର ହିସାବ ରଖୁଥିବ । 'ଯେଉଁ ଦ୍ୱାର ଏ ପର୍ଯ୍ୟନ୍ତ ତୁମ ଆଦର୍ଶ ସାଧନରେ ତୁମର ବାଧକ ହେବାଭଳି ମନେ ହେଉଥିଲା ସେ ଦ୍ୱାର ଟପି ତୁମେ ଏବେ ବାହାରି ଆସିଛ ଏବଂ ଦର୍ଶକମଣ୍ଡଳୀ ସାମ୍ନାରେ ଠିଆ ହୋଇଛ – ତୁମ କାନ ପଛରେ ଏ ପର୍ଯ୍ୟନ୍ତ କଲମଟି ଖୋସା ହୋଇଛି, ଆଙ୍ଗୁଠି ସାରା କାଳିଦାଗ ଲାଗିଛି – ତତ୍‌କ୍ଷଣାତ୍ ତୁମର ପ୍ରେରଣାପ୍ରଦ ବକ୍ତୃତା ଅନର୍ଗଳ ଛୁଟି ଚାଲିଛି । ହୁଏତ ମେଣ୍ଢା ଚରାଉ ଚରାଉ ତୁମେ ସହରକୁ ପଶିଆସିଛ – ତୁମ ଗାଉଁଲି ପାଟିରେ ବାଡ଼ବତା ନାହିଁ । ତୁମ ନିର୍ଭୀକ ଆତ୍ମା ଦ୍ୱାରା ପରିଚାଳିତ ହୋଇ ଏମିତି ତୁମେ ଘୁରି ବୁଲୁଥିବ, ବୁଲୁ ବୁଲୁ ଆସି ମାଲିକଙ୍କ ଷ୍ଟୁଡିଓରେ ପହଞ୍ଚିବ । କିଛି ସମୟ ପରେ ମାଲିକ କହିବେ ତୁମକୁ ଶିଖାଇବାକୁ ମୋ ପାଖରେ ଆଉ ଅଧିକ କିଛି ନାହିଁ । ଏବଂ ଏବେ ତୁମେ ନିଜେ ମାଲିକ ହୋଇଗଲ । ଯିଏ ଏଇ କିଛି ସମୟ ପୂର୍ବେ ମେଣ୍ଢା ଚରାଇବା ବେଳେ ବଡ଼ ବଡ଼ କଥା ଚିନ୍ତା କରୁଥିଲା ସିଏ ଏବେ ମାଲିକ ହୋଇଗଲା । ତୁମେ ତୁମ କରତ ଓ ରନ୍ଦାକୁ ଛାଡ଼ି ପୃଥିବୀକୁ ପୁନରୁଜ୍ଜୀବିତ କରିବାର ଦାୟିତ୍ୱ ବହନ କରିବ ।"

ଅଜ୍ଞ, ଚିନ୍ତାହୀନ, ଆଳସ୍ୟପରାୟଣ ବ୍ୟକ୍ତି ଦ୍ରବ୍ୟମାନଙ୍କୁ ନଦେଖି, ଦ୍ରବ୍ୟମାନଙ୍କର ପ୍ରତୀୟମାନ ଫଳାଫଳକୁ କେବଳ ଦେଖି 'ଅଦୃଷ୍ଟ', 'ଆକସ୍ମିକତା', 'ଭାଗ୍ୟ' ବିଷୟରେ ଗପେ । କୌଣସି ବ୍ୟକ୍ତି ଧନଶାଳୀ ହେଉଥିବାର ଦେଖି ଏମାନେ କହନ୍ତି,

"ଆରେ, ସେ ଲୋକଟି କେତେ ଭାଗ୍ୟବାନ୍ !" ଅନ୍ୟ କାହାକୁ ବୌଦ୍ଧିକ ଉତ୍କର୍ଷ ଲାଭ କରିବାର ଦେଖି ସେମାନେ କହନ୍ତି, "ଈଶ୍ୱରଙ୍କର ତା' ପ୍ରତି କି ଅସୀମ କରୁଣା !" ଅନ୍ୟ କାହାର ସାଧୁ ପ୍ରକୃତି ଅଥବା ପର୍ଯ୍ୟାପ୍ତ ପ୍ରଭାବ ଲକ୍ଷ୍ୟକରି ସେମାନେ କହନ୍ତି, "ଦେଖ, ପ୍ରତି କ୍ଷେତ୍ରରେ ଅଦୃଷ୍ଟ କିପରି ତାକୁ ସହାୟ ହେଉଛି !" ଏହିଭଳି ସଫଳକାମ ବ୍ୟକ୍ତିଗଣ ଯେଉଁ ସଂଘର୍ଷ କରିଛନ୍ତି, ଯେଉଁଭଳି ପରୀକ୍ଷାନିରୀକ୍ଷା କରିଛନ୍ତି, ବିଫଳତା ସହ ଯେପରି ଲଢ଼ିଛନ୍ତି, ସଫଳତାର ସ୍ୱାଦ ଅନୁଭବ କରିବାକୁ ସେଚ୍ଛାକୃତ ଭାବେ ଯେଉଁ ସବୁ ତ୍ୟାଗ କରିଛନ୍ତି ସେ ସବୁ ଏ ଅଳସୁଆମାନଙ୍କ ଆଖିରେ ପଡ଼େନାହିଁ । ସଫଳତା ପ୍ରାପ୍ତ ବ୍ୟକ୍ତିଗଣ କିଭଳି ଭୟଶୂନ୍ୟ ପ୍ରୟାସମାନ କରିଛନ୍ତି, ଯେଭଳି ଦୃଢ଼ତାର ସହ ବିଶ୍ୱାସ ପୋଷଣ କରିଛନ୍ତି ଏସବୁ ସେମାନେ ଦେଖିପାରନ୍ତି ନାହିଁ । ଯଦି ଦେଖିପାରନ୍ତେ ତେବେ ହୁଏତ ପ୍ରତୀୟମାନ ହେଉଥିବା ପ୍ରତିବନ୍ଧକ ଗୁଡ଼ିକୁ ଏଡ଼ାଇ ନିଜ ହୃଦୟର ସ୍ୱପ୍ନକୁ ସାକାର କରିପାରନ୍ତେ । ଅନ୍ଧକାର ଓ ଯନ୍ତ୍ରଣା ବିଷୟରେ ଏମାନେ ଜାଣନ୍ତି ନାହିଁ । କେବଳ ଆଲୋକ ଓ ଆନନ୍ଦକୁ ଦେଖି ଏମାନେ ତାକୁ କହନ୍ତି 'ଭାଗ୍ୟ' । ଏମାନେ କଷ୍ଟପ୍ରଦ ଦୀର୍ଘଯାତ୍ରାକୁ ଦେଖିପାରନ୍ତି ନାହିଁ, କେବଳ ମଧୁର ଲକ୍ଷ୍ୟକୁ ଅବଲୋକନ କରି କହନ୍ତି "ସୌଭାଗ୍ୟ" । ପଦ୍ଧତିକୁ ବୁଝିପାରନ୍ତି ନାହିଁ, କେବଳ ଫଳାଫଳକୁ ଦେଖି କହନ୍ତି 'ଆକସ୍ମିକତା' ।

ମଣିଷ ଜୀବନର ସମସ୍ତ କ୍ଷେତ୍ରରେ 'ଉଦ୍ୟମ' ଅଛି, ଫଳାଫଳ ଅଛି । ଉଦ୍ୟମର ସଘନତା ହେଉଛି ଫଳାଫଳର ପରିମାପକ । 'ଉପହାର', ଶକ୍ତି, ବସ୍ତୁ, ବୌଦ୍ଧିକ ଏବଂ ଆଧ୍ୟାତ୍ମିକ ସମ୍ପଦ ଗୁଡ଼ିକ ହେଉଛନ୍ତି ଉଦ୍ୟମର ଫଳ; ଚିନ୍ତାପ୍ରବାହର ସମ୍ପୂର୍ଣ୍ଣ ପରିପ୍ରକାଶ, ଈପ୍ସିତ ଆକାଂକ୍ଷାର ପୂରଣ, ସାକାର ସ୍ୱପ୍ନ ।

ଯେଉଁ ମହାନ୍ ସ୍ୱପ୍ନ ତୁମ ମନରେ ଅଛି, ଯେଉଁ ଆଦର୍ଶକୁ ତୁମେ ହୃଦୟ ସିଂହାସନରେ ବସାଇଛ - ସେଇ ତୁମ ଜୀବନକୁ ଗଢ଼ିବ, ତୁମେ ତଦନୁରୂପ ବ୍ୟକ୍ତିତ୍ୱର ଅଧିକାରୀ ହେବ ।

## ପ୍ରଶାନ୍ତି

ଶାନ୍ତ ମନ ପ୍ରଜ୍ଞା ନିମନ୍ତେ ଅନ୍ୟତମ ସୁନ୍ଦର ରତ୍ନ, ଆତ୍ମନିୟନ୍ତ୍ରଣ ନିମନ୍ତେ କରାଯାଇଥିବା ସୁଦୀର୍ଘ ଧୈର୍ଯ୍ୟପୂର୍ଣ୍ଣ ଉଦ୍ୟମର ଫଳ ; ଏହିଭଳି ଅବସ୍ଥାର ଉପସ୍ଥିତି ଅଭିଜ୍ଞତାର ପରିପକ୍ୱତାକୁ ସୂଚାଇ ଦିଏ, ଚିନ୍ତାପ୍ରବାହର ନିୟମ ଓ କାର୍ଯ୍ୟକାରୀତା ବିଷୟରେ ବ୍ୟକ୍ତିର ସାଧାରଣ ଜ୍ଞାନଠାରୁ ଅଧିକ ଜ୍ଞାନ ଥିବା ବିଷୟ ସୂଚାଏ ।

ଚିନ୍ତାଧାରା ଦ୍ୱାରା ବ୍ୟକ୍ତି କେତେଦୂର ବିବର୍ତ୍ତିତ, ଏ ବିଷୟକୁ ବୁଝିବା ଅନୁପାତରେ ସେ ଶାନ୍ତ । କାରଣ ଏହି ପ୍ରକାର ଜ୍ଞାନ ବଳରେ ଅନ୍ୟମାନେଯେ ନିଜ ନିଜ ଚିନ୍ତା ପ୍ରବାହର ଫଳ, ଏକଥା ବୁଝିବାରେ ସେ ସମର୍ଥ ହୁଏ । ବ୍ୟକ୍ତି ଏହିପ୍ରକାର ସଠିକ୍ ଭାବେ ବୁଝିବାକୁ ଆରମ୍ଭ କଲେ ବସ୍ତୁମାନଙ୍କ ମଧ୍ୟରେ ଥିବା ଆଭ୍ୟନ୍ତରୀଣ ସମ୍ପର୍କ ବିଷୟରେ ଅଧିକ ସ୍ପଷ୍ଟ ଭାବେ ଅବଗତ ହୋଇପାରିବ, କାର୍ଯ୍ୟ କାରଣ ଗୁଡ଼ିକୁ ବିବେଚନା କରିପାରିବ: ଆଉ ଅନ୍ଧାରରେ ବାଡ଼ି ବୁଲାଇବ ନାହିଁ, ଦୁଃଖ କରିବ ନାହିଁ, ଅନୁଶୋଚନା ରହିବ ନାହିଁ, ବ୍ୟସ୍ତ ବିବ୍ରତ ହେବ ନାହିଁ । ସେ ସନ୍ତୁଳିତ, ସୁଦୃଢ଼ ଏବଂ ଶାନ୍ତ ରହିବ ।

ଯେଉଁ ଶାନ୍ତ ମଣିଷ ନିଜକୁ କିପରି ପରିଚାଳିତ କରିବାକୁ ହେବ ସେକଥା ଜାଣିଛି, ଅନ୍ୟମାନଙ୍କ ସହ କିପରି ଖାପଖୁଆଇବାକୁ ହେବ ଜାଣିଛି; ପ୍ରତିବଦଳରେ ଅନ୍ୟମାନେ ତା'ର ଆଧ୍ୟାତ୍ମିକ ଶକ୍ତି ପ୍ରତି ସମ୍ମାନ ପ୍ରଦର୍ଶନ କରିବେ, ତା'ଠାରୁ ଭଲକଥା ଶିଖି ପାରିବେ ବୋଲି ଅନୁଭବ କରିବେ ଏବଂ ତା ଉପରେ ବିଶ୍ୱାସ ସ୍ଥାପନ କରିବେ । ମଣିଷ ଯେତେ ଅଧିକ ଶାନ୍ତ ହେବ ତା'ର ସଫଳତା, ପ୍ରଭାବ, ସାମର୍ଥ୍ୟ ସବୁଦିନପାଇଁ ସେତେ ବୃଦ୍ଧିପ୍ରାପ୍ତ ହେବ । ଏପରିକି ସାଧାରଣ ବେପାରୀଟିଏ ତାର ଆତ୍ମନିୟନ୍ତ୍ରଣ କ୍ଷମତା ଓ ମାନସିକ ସ୍ଥିରତାରେ ବୃଦ୍ଧି ଘଟାଇବା ଫଳରେ ନିଜ ବ୍ୟବସାୟରେ ଅଧିକ ସଫଳତା ହାସଲ କରିପାରିବ କାରଣ ଜଣେ ଶାନ୍ତ, ଧୀରସ୍ଥିର ସ୍ୱଭାବ ବିଶିଷ୍ଟ ବ୍ୟକ୍ତି ସହ କାରବାର କରିବାକୁ ଗ୍ରାହକମାନେ ସବୁବେଳେ ଅଧିକ ପସନ୍ଦ କରନ୍ତି ।

ଦୃଢ଼, ଶାନ୍ତ ବ୍ୟକ୍ତିକୁ ଅନ୍ୟମାନେ ସବୁବେଳେ ଆଦର କରନ୍ତି, ସମ୍ମାନ ଦିଅନ୍ତି । ଏଭଳି ବ୍ୟକ୍ତିତ୍ୱ ମରୁଭୂମିରେ ଛାୟାପ୍ରଦାୟକ ବୃକ୍ଷ ସଦୃଶ । ଝଡ଼ ବେଳେ ଆଶ୍ରୟ ପ୍ରଦାନକାରୀ ପଥର ସଦୃଶ । ଧୀର, ଶାନ୍ତ, ନମ୍ର, ସଦାଚାରୀ, ବିନୟୀ, ସନ୍ତୁଳିତ ବ୍ୟକ୍ତିକୁ କିଏ ବା ଶ୍ରଦ୍ଧା ନକରେ ? ଖରା ହେଉ ବା ବର୍ଷା, କିଛି ଯାଏ ଆସେ ନାହିଁ । ଏହିସବୁ ଆଶିଷ ପ୍ରାପ୍ତ ବ୍ୟକ୍ତି ପାଇଁ କିଛି ଫରକ ନାହିଁ । ଏମାନେ ତ ସବୁବେଳେ ମଧୁର, ଶାନ୍ତ, ନିଶ୍ଚଳ ! ଚରିତ୍ରର ଯେଉଁ ଅତି ସୂକ୍ଷ୍ମ ସନ୍ତୁଳନକୁ ଆମେ ପ୍ରଶାନ୍ତି କହୁଛୁ ତାହା ହେଉଛି ସଂସ୍କାରର ସର୍ବଶେଷ ଅଧ୍ୟାୟ, ଜୀବନର ପୁଷ୍ପ, ଆତ୍ମାର ଫଳ । ପ୍ରଜ୍ଞା ଭଳି ଏହା ଅମୂଲ୍ୟ । ସୁବର୍ଣ୍ଣ ଠାରୁ-ସବୁଠୁ ଶୁଦ୍ଧ ସୁବର୍ଣ୍ଣ ଠାରୁ ଏହାର ଆବଶ୍ୟକତା ଖୁବ୍ ବେଶୀ । ଶାନ୍ତ ଜୀବନ ତୁଳନାରେ ତୁଚ୍ଛ ଅର୍ଥପିପାସା କେତେ ନଗଣ୍ୟ ସତେ ! 'ସତ୍ୟ'ର ସମୁଦ୍ରରେ ବାସ କରୁଥିବା ଜୀବନ, ଯାହା ଉପରେ ଉର୍ମିମାଳାର ରାଜତ୍ୱ, ଯେଉଁ ଶାଶ୍ୱତ ନିଶ୍ଚଳତାକୁ ଝଡ଼ କେବେ ସ୍ପର୍ଶ କରିନପାରେ !

ଚରିତ୍ର କୁ ଧ୍ୱଂସ କରି, ସନ୍ତୁଳନ ହରାଇ, ରକ୍ତକୁ ଦୂଷିତ କରି ନିଜ ଜୀବନକୁ ଆମିଳା କରି ଦେଉଥିବା; ଜୀବନର ସମସ୍ତ ସୌନ୍ଦର୍ଯ୍ୟ, ସମସ୍ତ ମାଧୁର୍ଯ୍ୟକୁ ନଷ୍ଟ କରି ଦେଉଥିବା କେତେ ଯେ ବ୍ୟକ୍ତିଙ୍କ ବିଷୟରେ ଆମକୁ ଜଣା । ସମଗ୍ର ମାନବଜାତିର ଅଧିକାଂଶ ସଦସ୍ୟ ଆତ୍ମନିୟନ୍ତ୍ରଣ ଅଭାବରୁ ନିଜ ଜୀବନକୁ ଧ୍ୱସ୍ତବିଧ୍ୱସ୍ତ କରି ଦେଉନାହାନ୍ତି ତ ? ନିଜର ସୁଖଶାନ୍ତିକୁ ନଷ୍ଟ କରି ଦେଉନାହାନ୍ତି ତ ? ଏହାହିଁ ପ୍ରଶ୍ନ । ସନ୍ତୁଳିତ, ପ୍ରଶାନ୍ତ ପ୍ରକୃତିର, ଶୁଦ୍ଧ ଚରିତ୍ର ବିଶିଷ୍ଟ ଯେଉଁ ବ୍ୟକ୍ତି ମାନଙ୍କୁ ଆମେ ଜୀବନକାଳରେ ଭେଟିଥାଉ ସେମାନଙ୍କ ସଂଖ୍ୟା କେତେ ଯେ ନଗଣ୍ୟ ।"

ହଁ, ଅନିୟନ୍ତ୍ରିତ ଆବେଗମାନଙ୍କର ଉତ୍ତୁଙ୍ଗ ତରଙ୍ଗରେ ମଣିଷର ପ୍ରକୃତି ଉଚ୍ଛୁଳି ପଡୁଛି । ଦୁଃଖର ସୁପରିଚାଳନା ବିନା ସେ ପ୍ରକୃତି ଉତ୍ତେଜିତ, ସନ୍ଦେହ ଓ ଉଦ୍‌ବେଗର ଝଡ଼ରେ ଇତଃସ୍ତତ । ଯିଏ ଜ୍ଞାନୀ, ଯାହାର ଚିନ୍ତାଧାରା ଶୁଦ୍ଧ ଏବଂ ନିୟନ୍ତ୍ରିତ, କେବଳ ସେହି ବ୍ୟକ୍ତିର ଆଦେଶକୁ ତା ଆତ୍ମାର ଝଡ଼ଝଞ୍ଜା ଗୁଡ଼ିକ ମାନିବେ ।

ଝଡ଼ ବିଧ୍ୱସ୍ତ ଆତ୍ମାଗଣ, ତୁମେ, ଯେଉଁଠି ଥାଅନା କାହିଁକି, ଯେଉଁଭଳି ପରିସ୍ଥିତିରେ ବାସ କରୁଥାଅ ନା କାହିଁକି, ଏଇ କଥାକୁ ଜାଣିରଖ - ଜୀବନ ରୂପକ ମହାସାଗରରେ ଆଶୀର୍ବାଦର ଟାପୁ ଗୁଡ଼ିକ ଆନନ୍ଦରେ ହସୁଛନ୍ତି । ତୁମ ଆଦର୍ଶର ସୂର୍ଯ୍ୟସ୍ନାତ ବେଳାଭୂମି ତୁମ ଆଗମନକୁ ପ୍ରତୀକ୍ଷା କରିଛି । ଚିନ୍ତାର ମଙ୍ଗକୁ ଦୃଢ଼ମୁଷ୍ଟିରେ ଧରିରଖ ।

ତୁମ ଆତ୍ମାର ନୌକା ଉପରେ ସର୍ବଶ୍ରେଷ୍ଠ ନିର୍ଦ୍ଦେଶକ, ସର୍ବଶ୍ରେଷ୍ଠ ମାଲିକ ଅଡଜି ପଡ଼ିଛନ୍ତି । ସେ ଟିକିଏ ଶୋଇପଡ଼ିଛନ୍ତି, ତାଙ୍କୁ ଜାଗ୍ରତ କର । ଆତ୍ମ ନିୟନ୍ତ୍ରଣ ହିଁ ସାମର୍ଥ୍ୟ । ଉଚିତ୍ ଚିନ୍ତା ବଳରେ ଏହାକୁ ଆୟତ୍ତ କରଯାଇପାରେ । ପ୍ରଶାନ୍ତି ହେଉଛି ଶକ୍ତି । ନିଜ ହୃଦୟକୁ କୁହ, "ଶାନ୍ତି, ଶାନ୍ତି ।"

ଆରୋପ୍ୟତେ ଶିଳା ଶୈଳେ ଯତ୍ନେନ ମହତା ଯଥା ।
ନିପାତ୍ୟତେ କ୍ଷଣେନାଧସ୍ତଥାତ୍ମା ଗୁଣଦୋଷୟୋଃ ॥

ଯେପରି ପ୍ରସ୍ତର ଖଣ୍ଡକୁ ବହୁ କଷ୍ଟରେ ଶୈଳ ଉପରକୁ ଉଠାଇ ସ୍ଥାପନ କରାଯାଏ, କିନ୍ତୁ ମୁହୂର୍ତ୍ତକରେ ତଳକୁ ପକାଇ ଦିଆଯାଏ, ସେହିପରି ଆତ୍ମା ବହୁ କଷ୍ଟରେ ଗୁଣ ଲାଭ କରେ, ମାତ୍ର କ୍ଷଣକରେ ଦୋଷଯୁକ୍ତ ହୋଇଥାଏ ।

# ପରିଶିଷ୍ଟ

**We choose our joys and**
**sorrows long before**
**we experience them.**

**- Kahlil Gibran**

---

ତାଦୃଶୀଜାୟତେ ବୁଦ୍ଧିର୍ବ୍ୟବସାୟୋଽପି ତାଦୃଶଃ ।
ସହାୟତାସ୍ତାଦୃଶା ଏବ ଯାଦୃଶୀ ଭବିତବ୍ୟତା ।।

ଯେପରି ଭାବନା କରାଯାଏ ସେହିପରି ବୁଦ୍ଧି ପ୍ରକାଶ ପାଇଥାଏ । ବ୍ୟବସାୟ କର୍ମ ମଧ୍ୟ ସେହିଭଳି ହୋଇଥାଏ, ସହାୟକ ମଧ୍ୟ ସେହିଭଳି ମିଳିଥାନ୍ତି ।

---

ସନ୍ତୋଷାମୃତତୃପ୍ତାନାଂ ତତ୍ସୁଖଂ ଶାନ୍ତଚେତସାଂ ।
ନ ଚ ତଦ୍ଧନଲୁବ୍ଧାନାମିତଶ୍ଚେତଶ୍ଚ ଧାବତାମ୍ ।।

ଶାନ୍ତ ଚିତ୍ତଯୁକ୍ତ ସନ୍ତୁଷ୍ଟ ବ୍ୟକ୍ତିମାନଙ୍କୁ ସନ୍ତୋଷ ରୂପୀ ଅମୃତରେ ଯେଉଁ ସୁଖ ମିଳିଥାଏ ତାହା ଏଆଡ଼େ ସେଆଡ଼େ ଦୌଡୁଥିବା ଧନ ଲୋଭୀମାନଙ୍କୁ ମିଳେ ନାହିଁ ।

---

ହେ ପୁତ୍ର ! ମନର ପବିତ୍ରତା ତୁମର ଦ୍ୱିତୀୟ ଜ୍ୟୋତି । ଚନ୍ଦ୍ରମା ଯେପରି ଅନ୍ତରୀକ୍ଷର ଜ୍ୟୋତି, ସେହିପରି ମନ ଆନ୍ତରିକ ଜ୍ୟୋତି । ନିର୍ମଳ ଚନ୍ଦ୍ର ତୁଲ୍ୟ ନିର୍ମଳ ମନ ଆହ୍ଲାଦ ପ୍ରଦାନ କରେ । ରୁଗ୍ଣ ମନ ସୁସ୍ଥ ଶରୀରକୁ ମଧ୍ୟ ଅସୁସ୍ଥ ଓ ଶକ୍ତିହୀନ କରେ । ପାଗଳ ବ୍ୟକ୍ତି ଧନବାନ ହୋଇ ସୁଦ୍ଧା ନିର୍ଦ୍ଧନ । ସତ୍ୟ ଚିନ୍ତନ, ସତ୍ୟବଚନ ଓ ସତ୍ୟ ଆଚରଣ ମାନସିକ ଶୁଦ୍ଧତାର କାରଣ ।

(ବେଦବାଣୀ : ସାମବେଦ ୬୫ - ଭାଷ୍ୟକର୍ତ୍ତା : ପ୍ରିୟବ୍ରତ ଦାସ ।
ସୌଜନ୍ୟ : ସମାଜ, ତା ୧୦.୦୫.୦୯)

ଏହି କ୍ଷୁଦ୍ର ପ୍ରବନ୍ଧଟିର ବାର୍ତ୍ତା ଅନେକଙ୍କ ଜୀବନରେ ଅସାଧାରଣ ଶକ୍ତିର ଉତ୍ସକୁ ଉନ୍ମୁକ୍ତ କରିଦେଇଥିବା ସୁବିଦିତ ।

ପୁସ୍ତିକାଟି ପ୍ରତି ଆଗ୍ରହ ପ୍ରକାଶ କରିଥିବାରୁ ଧନ୍ୟବାଦ । ପଢ଼ିସାରିଲା ପରେ ଭାବିବେ, ଭଲ ବହିଟିଏ ସଂଗ୍ରହ କରିଛନ୍ତି ।